ଲୋକପ୍ରିୟ ବିଜ୍ଞାନମାଳା

# ଭାରତର ବିପନ୍ନ ପ୍ରାଣୀସମୂହ ଏବଂ ସେମାନଙ୍କର ସଂରକ୍ଷଣ



ଏସ୍. ଏମ୍. ନାୟାର

ଲୋକପ୍ରିୟ ବିଜ୍ଞାନମାଳା

# ଭାରତର ବିପନ୍ନ ପ୍ରାଣୀସମୂହ ଏବଂ ସେମାନଙ୍କର ସଂରକ୍ଷଣ

ଏସ୍. ଏମ୍. ନାୟାର

ଅନୁବାଦ
ଗୁରୁପ୍ରସାଦ ମହାନ୍ତି



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ଏହି ବହିଟି ପ୍ରାକୃତିକ ଭାରସାମ୍ୟ ସହାୟକ ପୁନଃ-ଉତ୍ପାଦିତ କାଗଜରେ ମୁଦ୍ରିତ ॥

ପ୍ରଚ୍ଛଦ ଚିତ୍ର : ନୀଲଗିରି ଛେଳି, ଅଙ୍କନ-ମୁକେଶ ବରାଡ଼ ।

ଅଙ୍କନକାରୀଗଣ : ମୁକେଶ ପାୱାର୍, ମୁକେଶ ବରାଡ଼, ଡ଼ି. ଏମ୍. ଥୁମର, ମୁକେଶ ଆଚାର୍ଯ୍ୟ, ଶୈଳେଶ୍ ଭାଭାନୀ-ସେଣ୍ଟର ଫର୍ ଏନ୍‌ଭାଇରନ୍‌ମେଣ୍ଟ ଏଜୁକେଶନ୍-ଅହମ୍ମଦାବାଦ ।

ରଙ୍ଗୀନ ଚିତ୍ରସମୂହ : ସୌଜନ୍ୟ-ନ୍ୟାସନାଲ୍ ମ୍ୟୁଜିୟମ ଅଫ୍ ନ୍ୟାଚୁରାଲ୍ ହିଷ୍ଟ୍ରୀ, ଦିଲ୍ଲୀ ।

ଆଲୋକଚିତ୍ର : ଇ. ହନୁମନ୍ତ ରାଓ, କୈଳାଶ ସଙ୍ଖାଳା, ଏ. ଜେ. ଟି. ଜନ୍‌ସିନ୍, ମନୋଜ ଢୋଲାକିଆ, ରାଜଶ୍ରୀ ସାରାଭାଇ, ଆର୍. କେ. ଗୌର୍, ଡ଼ଃ ଭେଙ୍କଟ, ଜଗଦୀପ୍ ରାଜପୁତ, ଜେ. ଜେ. ଚୁଘ୍, ଷଭିଦ୍ ପନୀ ।

ISBN - 81-237-1369-X

1995 (ଶକାବ୍ଦ 1916)



Endangered Animals of India and Their Conservation *(Oriya)*

ଟ. 31.00

ନିର୍ଦ୍ଦେଶକ, ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ, ନୂଆଦିଲ୍ଲୀ-110016 କର୍ତ୍ତୃକ ପ୍ରକାଶିତ ।

# ସୂଚୀପତ୍ର







# ପ୍ରାକ୍‌କଥନ

"ଭାରତର ବିପନ୍ନ ପ୍ରାଣୀସମୂହ ଓ ସେମାନଙ୍କ ସଂରକ୍ଷଣ" ନାମକ ଏହି ପୁସ୍ତକଟି ବିରଳ ଓ ବିପଦାପନ୍ନ ପ୍ରାଣୀଗଣ ଓ ସେମାନଙ୍କର ସଂରକ୍ଷଣର ଆବଶ୍ୟକତା ସମ୍ପର୍କରେ ଜନପ୍ରିୟ ସଚେତନତା ବୃଦ୍ଧି ପାଇଁ ଲେଖାଯାଇଛି । ଏକ ଜନବୋଧ ଶୈଳୀରେ ଏହାକୁ ଉପସ୍ଥାପନ କରିବା ପାଇଁ ପ୍ରୟାସ କରାଯାଇଛି, ଯଦିଓ କେତେକ ପରିମାଣରେ ପ୍ରାଣୀତତ୍ତ୍ୱଭିତ୍ତିକ ବର୍ଣ୍ଣନା ମୌଳିକ ଭାବେ କରିବା ଅନିର୍ବାର୍ଯ୍ୟ ହୋଇଛି, ବିଶେଷ କରି ତୃତୀୟ ଅଧ୍ୟାୟରେ, ଯେଉଁଠି ବିପନ୍ନ ପ୍ରାଣୀମାନଙ୍କ ସମ୍ପର୍କରେ କୁହାଯାଇଛି । ତଥାପି ଏହି ଅଧ୍ୟାୟରେ ପ୍ରାଣୀମାନଙ୍କର ବିଶେଷତ୍ୱ ସମ୍ବନ୍ଧରେ ଯାହା ବର୍ଣ୍ଣନା କରାଯାଇଛି, ତାହା ବ୍ୟାପକ ସାଧାରଣ ଚରିତ୍ରର ଅଟେ ଓ ଚିହ୍ନଟକରଣ ଉଦ୍ଦେଶ୍ୟରେ ବ୍ୟବହାର ନିମନ୍ତେ ତାହା ଉଦ୍ଦିଷ୍ଟ ନୁହେଁ ।

ବନ୍ୟଜନ୍ତୁ ସଂରକ୍ଷଣ ସମ୍ବନ୍ଧରେ ବୃଦ୍ଧି ପାଉଥିବା ସଚେତନତା ଏବଂ ପ୍ରକୃତି ସୁରକ୍ଷା ମାଧ୍ୟମରେ ଉଦ୍ଭିଦ, ପ୍ରାଣୀ ଓ ପରିବେଶ ବ୍ୟବସ୍ଥାକୁ ରକ୍ଷା କରିବା ନିମତେ ସରକାରଙ୍କ ପ୍ରୟାସ, ବିପନ୍ନ ପ୍ରାଣୀମାନଙ୍କ ସଂରକ୍ଷଣ ନିମନ୍ତେ ବିଶେଷ ପ୍ରକଳ୍ପ ସମୂହର ଆରମ୍ଭ ଓ ଆଇନ୍‌ଗତ ଏବଂ ଆନୁଷ୍ଠାନିକ ସୁବିଧାର ପ୍ରଗତି ସତ୍ତ୍ୱେ ଆମର ଆହୁରି ଅନେକ ପଥ ବାକୀ ରହିଛି । ସଂରକ୍ଷଣ ସପକ୍ଷରେ ବ୍ୟାପକ ସଚେତନତା ଏବଂ ସୁଶିକ୍ଷିତ ଜନମତ ସୃଷ୍ଟିର ଆବଶ୍ୟକତା ପରିପ୍ରେକ୍ଷୀରେ ଏହି ପୁସ୍ତକରେ ଏକତ୍ରିତ କରାଯାଇଥିବା ତଥ୍ୟଗୁଡ଼ିକ ଉପଯୋଗୀ ପ୍ରମାଣିତ ହେବ ବୋଲି ଆଶା କରାଯାଉଛି ।

ନ୍ୟାସନାଲ ମ୍ୟୁଜିୟମ ଅଫ୍ ନ୍ୟାଚୁରାଲ ହିଷ୍ଟ୍ରୀ (N.M.N.H.) ନୂଆଦିଲ୍ଲୀ ସହ ମୋର ସମ୍ପୃକ୍ତି ଏବଂ ସଂରକ୍ଷଣ ଶିକ୍ଷା କ୍ଷେତ୍ରରେ ଏହାର କାର୍ଯ୍ୟକ୍ରମ ତଥା ଏ ନିମନ୍ତେ ଉକ୍ତ ମ୍ୟୁଜିୟମରେ ସମ୍ବଳର ବିକାଶ, ଏହି କାର୍ଯ୍ୟରେ ମୋତେ ବହୁତ ସହାୟକ ହୋଇଛି । ଶ୍ରୀ ଭି. ଭି. ଭୋରତେ,

ଏନ୍. ଏମ୍. ଏନ୍. ଏଚ୍.ଙ୍କ ପ୍ରତି ମୁଁ କୃତଜ୍ଞ, ଜଣେ ଦକ୍ଷ କ୍ଷେତ୍ର- ପ୍ରକୃତିବିତ୍ ଭାବେ ତାଙ୍କ ଅଭିଜ୍ଞତା ଭିତ୍ତିରେ ମୋତେ ବିପଦାପନ୍ନ ପ୍ରାଣୀମାନଙ୍କ ସମ୍ବନ୍ଧରେ ଉପଯୋଗୀ ତଥ୍ୟମାନ ଯୋଗାଇ ସହାୟକ କରିଥିବା ହେତୁ । ଶ୍ରୀ ଇ. କେ. ନରେଶ୍ୱର, ସେଣ୍ଟର ଫର ଏନ୍‌ଭାଇରନ୍‌ମେଣ୍ଟ ଏଜୁକେଶନ୍, (CEE), ଅହମ୍ମଦାବାଦ ମୋର ପାଣ୍ଡୁଲିପିଟି ପଢ଼ି ଓ ମୂଲ୍ୟବାନ୍ ପରାମର୍ଶ ଦେଇ ଯଥେଷ୍ଟ ସାହାଯ୍ୟ କରିଛନ୍ତି । ମୁଁ ଶ୍ରୀମତୀ ମଞ୍ଜୁ ଗୁପ୍ତା, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟଙ୍କ ପ୍ରତି ମଧ୍ୟ କୃତଜ୍ଞ, ପାଣ୍ଡୁଲିପିରେ ତାଙ୍କର ସମ୍ପାଦକୀୟ ସମ୍ଭିକରଣ କାର୍ଯ୍ୟ ନିମନ୍ତେ ।

ଅଳଙ୍କରଣ ନିମନ୍ତେ ମୁଁ ସି. ଇ. ଇ., ଅହମ୍ମଦାବାଦର ଡ଼ିଜାଇନ୍ ଓ ଗ୍ରାଫିକ୍ସ୍ ବିଭାଗର ଶ୍ରୀ ଧ୍ରୁନ୍ କାର୍‌କାରିଆ ଏବଂ ତାଙ୍କର ସହଯୋଗୀ ମାନଙ୍କ ନିକଟରେ ଋଣୀ । ଫଟୋଗ୍ରାଫ୍‌ଗୁଡ଼ିକ ଏନ୍. ଏମ୍. ଏନ୍. ଏଚ୍. ର ବିଶିଷ୍ଟ ପ୍ରକୃତିବିତ୍ ଓ ପ୍ରାକୃତିକ ଚିତ୍ର ଉତ୍ତୋଳନକାରୀମାନଙ୍କ ଦ୍ୱାରା ସଂଗୃହୀତ ବନ୍ୟଜନ୍ତୁ ସଙ୍କଳନ ରୁ ଆନୀତ । ଏହି ପୁସ୍ତକ ଲିଖନ ପାଇଁ ମୁଁ ମୋର ପତ୍ନୀ ଲୀଳା ଏବଂ ଝିଅ ମାନା ଓ ଦିବ୍ୟାଙ୍କ ନିକଟରୁ ପାଇଥିବା ଉତ୍ସାହ ଓ ସାହାଯ୍ୟ ଏହି କାର୍ଯ୍ୟର ସମାପ୍ତି ଲାଗି ମୋତେ ଅନୁପ୍ରେରିତ କରିଛି ।

ଏସ୍. ଏମ୍. ନାୟାର୍

ନୂଆଦିଲ୍ଲୀ
ଅକ୍ଟୋବର, 1992



# ଆମ ବନ୍ୟ ପ୍ରାଣୀଙ୍କ ପରମ୍ପରା

ପଶୁ ପକ୍ଷୀ ବିହୀନ ଏକ ପୃଥିବୀର କଳ୍ପନା କରନ୍ତୁ । କୁକୁର ନାହିଁ, ବିରାଡ଼ି ନାହିଁ, ଗାଈଗୋରୁ ନାହାନ୍ତି ; ଏବଂ ଆମ ପରିପାର୍ଶ୍ୱକୁ ସରସ ସୁନ୍ଦର କରୁଥିବା ପ୍ରଜାପତିଟିଏ କିମ୍ବା ପକ୍ଷୀଟିଏ ନାହିଁ । ଏପରିକି, ହରିଣ, ଚିତାବାଘ କିମ୍ବା ବାଘ ପରି ଆଦିମ ବନ୍ୟପଶୁମାନେ ମଧ ନାହାନ୍ତି । ସେଭଳି ଅନୁପସ୍ଥିତିରେ କେବଳ ଆମେ ହିଁ ଆପଣା ଛାଏଁ ତିଷ୍ଠି ରହିବା ବୋଲି ଭାବୁଛନ୍ତି କି ? ନା, କାରଣ ପୃଥିବୀର ସବୁ ଜୀବଜନ୍ତୁ ମଧରେ କିଛି ନା କିଛି ପାରସ୍ପରିକ ଅନ୍ତର୍ନିହିତ ସମ୍ପର୍କ ଅଛି । ପ୍ରାଣୀମାନେ ସେମାନଙ୍କର ପାର୍ଥିବ ପରିବେଶ- ଜଳ ସ୍ଥଳ ଓ ବାୟୁ ଉପରେ ନିର୍ଭରଶୀଳ । ଉଦ୍ଭିଦ, ପ୍ରାଣୀ ଓ ପରିବେଷ୍ଟନୀ ମଧରେ ଥିବା ପାରସ୍ପରିକ ସମ୍ପର୍କର ଅନୁଧାନକୁ "ପରିବେଶ ତତ୍ତ୍ୱ" (Ecology) କୁହାଯାଏ । ପରିବେଶ ତତ୍ତ୍ୱର ଏକ ମୌଳିକ ଦିଗ, ଯାହାକି ଆମକୁ ମଣିଷ, ପଶୁ ଓ ଉଦ୍ଭିଦ ମଧରେ ଥିବା ପାରସ୍ପରିକ ସମ୍ପର୍କ ବିଷୟରେ ଅବଗତ କରାଏ, ତାହା ହେଉଛି ପ୍ରାଣୀ, ଉଦ୍ଭିଦ ଓ ମଣିଷ ମଧରେ ଥିବା ଖାଦ୍ୟଜନିତ ଆବଶ୍ୟକତା ।

ଆମେ ସମସ୍ତେ ଜାଣୁ ଯେ, ସବୁଜ ବୃକ୍ଷଲତାମାନେ ପ୍ରାଥମିକ ଖାଦ୍ୟ ପ୍ରସ୍ତୁତ କାରୀ । ସେମାନେ ଆଲୋକଶ୍ଳେଷଣ ବା ଅଙ୍ଗାରପରିପାକ କ୍ରିୟା ଦ୍ୱାରା ସୂର୍ଯ୍ୟରଶ୍ମିରୁ ଶକ୍ତି ସଂଗ୍ରହ କରି ଅଙ୍ଗାରକାମ୍ଳ ଓ ଜଳରୁ ଶ୍ୱେତସାର ପ୍ରସ୍ତୁତ କରନ୍ତି । ତୃଣଭୋଜୀ ପ୍ରାଣୀମାନେ ଯେତେବେଳେ ଏସବୁ ଉଦ୍ଭିଦ ଖାଆନ୍ତି, ସେମାନେ ଏହି ଖାଦ୍ୟରୁ ଶକ୍ତି ପାଆନ୍ତି । ମାଂସାଶୀ ପ୍ରାଣୀମାନେ ଯେତେବେଳେ ସେମାନଙ୍କୁ ଖାଆନ୍ତି, ତହିଁରୁ ସେମାନଙ୍କ ଶରୀର ନିର୍ବାହ ଲାଗି ଆବଶ୍ୟକୀୟ ଶକ୍ତି ପାଉଥାଆନ୍ତି । ଏହି ପ୍ରକ୍ରିୟାକୁ "ଖାଦ୍ୟଶୃଙ୍ଖଳ" (Food chain) କୁହାଯାଏ । ଉଦାହରଣସ୍ୱରୂପ ଘାସ-ଝିଣ୍ଟିକା-ବେଙ୍ଗ । ଏହା ଏକ ସରଳ ଖାଦ୍ୟ ଶୃଙ୍ଖଳ । ଯଦି ବେଙ୍ଗଟିକୁ ସାପ ଖାଏ ଓ ସାପଟିକୁ ଚିଲ ଖାଏ, ତାହେଲେ ଏହା ଏକ ଜଟିଳ ଖାଦ୍ୟ ଶୃଙ୍ଖଳ ହୋଇଯାଏ । ପ୍ରକୃତି ବକ୍ଷରେ ଏଭଳି ଅନେକ ଖାଦ୍ୟଶୃଙ୍ଖଳ ରହିଛି । ଏକ ନିର୍ଦ୍ଦିଷ୍ଟ ପ୍ରାକୃତିକ ଆବାସ ସ୍ଥଳୀର ପ୍ରାଣୀମାନଙ୍କ ମଧରେ ଥିବା ପରସ୍ପର ସଂଯୁକ୍ତ ବିଭିନ୍ନ ଖାଦ୍ୟ ଶୃଙ୍ଖଳ ଗୁଡ଼ିକର ସମାହାର ଏକ "ଖାଦ୍ୟ ଜାଲକ" (Food web) ସୃଷ୍ଟି କରେ ।

ଏହି ଖାଦ୍ୟ ଜାଲକ ହେଉଛି ନାନା ଜାତିର ଜୀବମାନଙ୍କ ମଧରେ ଛନ୍ଦା ଏକ ସୂକ୍ଷ୍ମ

ପାରସ୍ପରିକ ସମ୍ପର୍କ, ଯାହାକି ଏକ ସୁକ୍ଷମ ଓ ସ୍ୱୟଂପୂର୍ଣ୍ଣ ଜୀବନ ନିର୍ବାହ ପ୍ରଣାଳୀର ପରିପ୍ରକାଶ । ଖାଦ୍ୟ ଜାଲକର କୌଣସି ଏକ ଯୋଗସୂତ୍ର ନଷ୍ଟ ହେଲେ ତା'ର ପ୍ରଭାବ ଅନ୍ୟ ଯୋଗସୂତ୍ର ବା ସମଗ୍ର ପ୍ରଣାଳୀ ଉପରେ ପଡ଼ିବ ।

ଉଦାହରଣ ସ୍ୱରୂପ ବାଘ ଓ ଚିତା ଭଳି ମାଂସାଶୀ ପ୍ରାଣୀ ମାନଙ୍କର ଯଦି ବଂଶ ଲୋପ ହୋଇଯାଏ, ତା'ହେଲେ ହରିଣ ବଂଶ ଏପରି ଦ୍ରୁତ ଗତିରେ ବୃଦ୍ଧି ପାଇବ ଯେ, ଉଦ୍ଭିଦ ମାନେ ବଢ଼ିବାକୁ ମଧ ସମୟ ନଥିବ ।

ପ୍ରକୃତି ବକ୍ଷରେ ପାରସ୍ପରିକ ସମ୍ପର୍କ ବହୁ ରୂପରେ ଦେଖିବାକୁ ମିଳେ । ପଶୁମାନଙ୍କ ଲାଗି ବୃକ୍ଷଲତାମାନେ ବାସସ୍ଥାନ ଯୋଗାଇ ଦିଅନ୍ତି । ପତଙ୍ଗ ଓ ପକ୍ଷୀମାନେ ଫୁଲରେ ପରାଗ ସଂଗମ ଘଟାଇ ଥାଆନ୍ତି । ପଶୁମାନେ ଉଦ୍ଭିଦର ବିଜ ବିକ୍ଷେପରେ ସାହାଯ୍ୟ କରନ୍ତି । ପରାନ୍ନଭୋଜୀ ଜୀବ ମାନେ ଉଭୟ ପ୍ରାଣୀ ଓ ଉଦ୍ଭିଦ ମାନଙ୍କୁ ଆକ୍ରମଣ କରନ୍ତି । ଏସବୁ ପାରସ୍ପରିକ ସମ୍ପର୍କ ମଧ୍ୟରୁ କେତେକ ପାରସ୍ପରିକ ହିତକାରୀ (Symbiosis) ଓ ଅନ୍ୟଗୁଡ଼ିକ ନୁହେଁ । ପ୍ରକୃତି ମଧ ତାର ସଫେଇଦଳ ବା ଆବର୍ଜନା ପାରିଷ୍ଣରକ ବାହିନୀ ରଖିଛି । ଯଥା- କାଉ, ଚିଲ, ହେଟାବାଘ ଇତ୍ୟାଦି, ଯେଉଁମାନେ ମେହେନ୍ତର ଭଳି କାର୍ଯ୍ୟ କରନ୍ତି । ମୃତ ଦେହକୁ ପଚେଇ ସଢେଇ ବିଗଳିତ କରି, ତାର ଜୈବ ଓ ଅଜୈବ ଅଂଶ ଗୁଡ଼ିକୁ ପରବର୍ତ୍ତୀ ଜୀବମାନଙ୍କ ଦ୍ୱାରା ପୁନଃ ବ୍ୟବହାର ଲାଗି ପ୍ରକୃତିକୁ ଫେରାଇ ଦେବାର ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରିଥା'ନ୍ତି ।

ଉଦ୍ଭିଦ ଓ ପ୍ରାଣୀ ମଧ୍ୟରେ ପ୍ରକୃତି ଏକ ଜଟିଳ ଅଥଚ ସମନ୍ୱିତ ସମ୍ପର୍କ ସୃଷ୍ଟି କରିଛି । ଭୂପୃଷ୍ଠର ସମସ୍ତ ପ୍ରାଣୀ ଭୂରାସାୟନିକ ଚକ୍ର ପ୍ରବାହ ଗୁଡ଼ିକ ମାଧ୍ୟମରେ ସଂପୃକ୍ତ । ଏସବୁ ଚକ୍ର ଯଥା- ଜଳଚକ୍ର, ଅଙ୍ଗାରଚକ୍ର, ଯବକ୍ଷାରଚକ୍ର ଓ ଖଣିଜ ଚକ୍ର, ପରିବେଶ ଓ ପ୍ରାଣୀମାନଙ୍କ ମଧ୍ୟରେ ଆବଶ୍ୟକୀୟ ମୌଳିକ ପଦାର୍ଥ ଗୁଡ଼ିକର ଆବର୍ତ୍ତନ ସମ୍ଭବ କରାଇ ଥା'ନ୍ତି । ଆମର ଏଇ ଗ୍ରହ ପୃଥିବୀ ବକ୍ଷରେ ପ୍ରକୃତି ଯେଉଁ ଜୀବ, ଜନ୍ତୁ, ଉଦ୍ଭିଦ ଓ ନିର୍ଜୀବ ବସ୍ତୁସମ୍ପଦମାନ ସୃଷ୍ଟି କରିଛି, ସେମାନଙ୍କର ସଂରକ୍ଷଣର ତାତ୍ପର୍ଯ୍ୟ ଉପଲବ୍ଧି କରିବା ଲାଗି ଏସବୁ ପାରିବେଶିକ ସମ୍ପର୍କ ବୁଝିବା ଦରକାର ।

## ଜୀବଜଗତର ଅନୈକ୍ୟ

ପ୍ରାୟ ୩୦୦କୋଟି ବର୍ଷ ପୂର୍ବେ ହୁଏତ ପୃଥିବୀ ପୃଷ୍ଠରେ ଜୀବନର ସୃଷ୍ଟି ହୋଇଥିବ । ଆଜି ପାଞ୍ଚଲକ୍ଷରୁ ଉର୍ଦ୍ଧ୍ୱ ଜାତିର ଉଦ୍ଭିଦ ଏବଂ ପ୍ରାୟ ଦଶଲକ୍ଷ ବିଭିନ୍ନ ପ୍ରକାରର ପ୍ରାଣୀ ପୃଥିବୀରେ ଅଛନ୍ତି । ଏ ସମଗ୍ର ଜୀବଜଗତ ପୃଥିବୀର ଜୀବମଣ୍ଡଳ ନାମକ ଏକ ପତଳା ସ୍ତର ମଧ୍ୟରେ ଆବଦ୍ଧ । ଏହି ଜୀବମଣ୍ଡଳ ବହୁ ସଂଖ୍ୟକ ଜୈବାଞ୍ଚଳ (Biomes)କୁ ନେଇ ଗଠିତ । ପ୍ରତ୍ୟେକ ଜୈବାଞ୍ଚଳର ଏକ ନିର୍ଦ୍ଦିଷ୍ଟ ପାରିବେଶିକ ଓ ଭୌଗଳିକ ବିଶେଷତ୍ୱ ଅଛି, ଯାହାକି ବିଭିନ୍ନ ଉଦ୍ଭିଦ ଓ ଜୀବଜନ୍ତୁଙ୍କୁ ବଞ୍ଚିବାରେ ସାହାଯ୍ୟ କରେ । କୌଣସି ଏକ ନିର୍ଦ୍ଦିଷ୍ଟ ଜୀବବଳୟରେ ପରସ୍ପର ନିର୍ଭରଶୀଳ ସମସ୍ତ

ଜୀବଗୋଷ୍ଠୀଙ୍କୁ ନେଇ ଏକ ଜୈବାଞ୍ଚଳ ଗଠିତ ହୋଇଥାଏ । ଜୈବାଞ୍ଚଳର ଏକ ଉଦାହରଣ ହେଉଛି, ଗ୍ରୀଷ୍ମମଣ୍ଡଳୀୟ ବୃକ୍ଷ ବହୁଳ ଅରଣ୍ୟ, ଯେଉଁଠାରେ ଅରଣ୍ୟ ଆବାସସ୍ଥଳୀରେ ରହିବାର କ୍ଷମତା ସମ୍ପନ୍ନ ବିଭିନ୍ନ ଜାତିର ଉଦ୍ଭିଦ ଓ ପ୍ରାଣୀ ବାସ କରିଥା'ନ୍ତି । ଏହିସବୁ ଅରଣ୍ୟରେ ପ୍ରକାଣ୍ଡ ବୃକ୍ଷମାନେ ଉଚ୍ଚରେ ଚାଦୁଆ ପରି ଶାଖାପ୍ରଶାଖା ବିସ୍ତାର କରିଥା'ନ୍ତି, ଯହିଁରେ ମାଙ୍କଡ଼, ଉଡ଼ନ୍ତା ବେଙ୍ଗରା ମୂଷା, ଚଢ଼େଇ ଆଦି ବୃକ୍ଷାଶ୍ରୟୀ ଜୀବମାନେ ବଞ୍ଚି ରହନ୍ତି । ଜଙ୍ଗଲର ପାଦ ଦେଶରେ ବାଘ, ହରିଣ, ସାପ, କୀଟ ପତଙ୍ଗ ଓ ବହୁ ପଦ ବିଶିଷ୍ଟ ଜୀବମାନେ ବାସ କରନ୍ତି । ପ୍ରଚୁର ବୃଷ୍ଟିପାତ ସହ ଉଷ୍ଣ ଓ ଆର୍ଦ୍ର ଜଳବାୟୁ ହେଉଛି ବୃଷ୍ଟି ବହୁଳ ଅରଣ୍ୟର ଲକ୍ଷଣ । ସେହିଭଳି ସମୁଦ୍ର, ହ୍ରଦ, ତୃଣଭୂମି ସବସବିଆ ଅଞ୍ଚଳ, ପାଇନ୍ ଜଙ୍ଗଲ, ପତ୍ରଝଡ଼ା ଜଙ୍ଗଲ, ମରୁଭୂମି ଓ ଉପକୂଳ ଅଞ୍ଚଳରେ ବିଭିନ୍ନ ସ୍ୱୟଂସମ୍ପୂର୍ଣ୍ଣ ବାତାବରଣ ବା ଜୈବାଞ୍ଚଳମାନ ସୃଷ୍ଟି ହୁଏ ; ଯେଉଁ ପରିବେଶରେ ସମପ୍ରକୃତି ବିଶିଷ୍ଟ ଉଦ୍ଭିଦ ଓ ପ୍ରାଣୀ ମାନେ ତିଷ୍ଠି ରହିବାକୁ ସକ୍ଷମ ହୁଅନ୍ତି । ଏହିଭଳି ଭାବରେ ପ୍ରକୃତି ପ୍ରାଣୀମାନଙ୍କର ଏକ ଅତି ଜଟିଳ ଓ ଦୁର୍ବୋଧ ଜାଲକ ସୃଷ୍ଟି କରିଛି, ଯାହା ଫଳରେ ସେମାନେ ଆମ ଗ୍ରହର ବିଭିନ୍ନ ଜଳବାୟୁ ଓ ଭୌଗଳିକ ଅଞ୍ଚଳରେ ସମତା ରକ୍ଷାକରି ବସବାସ କରିପାରନ୍ତି । ଏହାହିଁ ଆମର ପ୍ରାକୃତିକ ପରମ୍ପରା । ଏବଂ ଏହି ପରମ୍ପରାର ଏକ ଅଙ୍ଗ ବହୁ ଜାତିର ଜୀବମାନଙ୍କ ମଧ୍ୟରୁ ଏକ ଆମେ ମଣିଷ ଜାତି । ଅନ୍ୟସବୁ ଜୀବ ମାନଙ୍କ ଭଳି ବଞ୍ଚି ରହିବା ଲାଗି ସମସ୍ତ ପ୍ରାକୃତିକ ପ୍ରକ୍ରିୟା ଉପରେ ନିର୍ଭରଶୀଳ ।

## ଭାରତର ଜୀବଜନ୍ତୁ

ଭାରତରେ ବିଭିନ୍ନ ପ୍ରକାରର ଅସଂଖ୍ୟ ଜୀବଜନ୍ତୁ ଭରି ରହିଛନ୍ତି । ଏଠାରେ ଥିବା ପ୍ରାୟ 75000 ଜାତିର ଜୀବଜନ୍ତୁଙ୍କ ମଧ୍ୟରେ 340 ଜାତିର ସ୍ତନ୍ୟପାୟୀ ପଶୁ, 1200 ଜାତିର ପକ୍ଷୀ, 420 ଜାତିର ସରୀସୃପ, 140 ଜାତିର ଉଭୟଚର ପ୍ରାଣୀ,2000ଜାତିର ମାଛ, 50,000 ଜାତିର କୀଟପତଙ୍ଗ ଏବଂ 4000 ଜାତିର ରେଣା, ଶାମୁକା ଓ ଅନ୍ୟାନ୍ୟ ଅମେରୁଦଣ୍ଡୀ ପ୍ରାଣୀ ଅଛନ୍ତି । ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ ହେଉଛି ହାତୀ । ଆବହମାନ କାଳରୁ ଆମ ଦେଶରେ ହାତୀ ପୌରାଣିକ ଗଳ୍ପ ଓ ରାଜକୀୟ ଆଡ଼ମ୍ବର ସହିତ ଜଡ଼ିତ । ଗୟଳ, ଅରଣା ମଇଁଷି, ନୀଳ ଗାଈ, ଚଉଶିଙ୍ଗା (କେବଳ ଭାରତରେ ମିଳେ), ବାଲି ହରିଣ, ଜଙ୍ଗଲି ଗଧ, ଓ ବିଶାଳକାୟ ଏକ ଶିଙ୍ଗା ଗଣ୍ଡା ମଧ୍ୟ ଦେଖାଯା'ନ୍ତି । ନାନା ଜାତିର ମୃଗ ମଧ୍ୟରେ ମୃଗ, ହରିଣ, ସବସବିଆ ଅଞ୍ଚଳର ହରିଣ, କସ୍ତୁରୀ ମୃଗ, ମଣିପୁରୀ ମୃଗ ଓ ଗୁରାଣ୍ଡି ଆଦି ଅଛନ୍ତି ।

ଶିକାରୀ ଜନ୍ତୁ ମାନଙ୍କ ମଧ୍ୟରେ କେବଳ ଏସୀୟ ସିଂହ ଆଫ୍ରିକା ବ୍ୟତୀତ ପୃଥିବୀରେ ଅନ୍ୟତ୍ର ଦେଖିବାକୁ ମିଳେ । ଭାରତର ଜାତୀୟପଶୁ ମହାବଳ ବାଘ ତାର ସୁନ୍ଦର ରଙ୍ଗ, ଲୋଭନୀୟ ଚେହେରା ଓ ଭୟଙ୍କର ଶକ୍ତି ଯୋଗୁଁ ଏ ଦେଶରେ ଚିର ଆଦୃତ ଓ ସମ୍ମାନିତ । ମାଂସାଶୀ ପ୍ରାଣୀ ମାନଙ୍କ ମଧ୍ୟରେ ବାଘର ଚେହେରା ଚିତ୍ତାକର୍ଷକ ଏବଂ ତାର ବର୍ତ୍ତମାନ ସ୍ୱରକୁ ସେ ଶକ୍ତିର ପ୍ରତୀକ

ଭାବେ ବ୍ୟବହାର କରେ । ସମଗ୍ର ପୃଥିବୀରେ ଦେଖାଯାଉଥିବା ଆଠ ଜାତିର ମହାବଳ ବାଘ ମଧ୍ୟରୁ ଭାରତରେ ଦେଖାଯାଉଥିବା ଜାତିର ନାମ ବଙ୍ଗୀୟ ମହାବଳ ବାଘ । ଆମ ଦେଶର ସବୁ ଅଞ୍ଚଳରେ ରୟାଲ ବେଙ୍ଗଲ୍ ଟାଇଗର ବା ରାଜକୀୟ ବଙ୍ଗୀୟ ମହାବଳ ବାଘ ଦେଖିବାକୁ ମିଳେ । ତା'ଛଡ଼ା ନେପାଳ, ଭୁଟାନ ଓ ବଙ୍ଗଳାଦେଶରେ ମଧ୍ୟ ଏ ଜାତିର ମହାବଳ ବାଘ ଦେଖାଯା'ନ୍ତି । ଅନ୍ୟ ବିଲେଇ ଜାତୀୟ ଜୀବମାନଙ୍କ ମଧ୍ୟରେ ଚିତାବାଘ, ମେଘୁଆ ଚିତାବାଘ, ତୁଷାର ଚିତାବାଘ ଓ ବିଭିନ୍ନ ଜାତିର ଛୋଟ ବିଲେଇ ଭାରତରେ ଦେଖାଯା'ନ୍ତି ।

ନାନା ଜାତିର ମାଙ୍କଡ଼ ଓ ହନୁ ମାଙ୍କଡ଼ମାନେ ଦେଶର ସବୁଆଡ଼େ ଦେଖିବାକୁ ମିଳନ୍ତି । ପୂର୍ବଭାରତୀୟ ବୃଷ୍ଟିବହୁଳ ଅରଣ୍ୟରେ ବାସ କରୁଥିବା ଭାରତୀୟ ବଣ ମଣିଷ (Hoolock gibon) ହେଉଛି ଭାରତର ଏକମାତ୍ର ଲାଞ୍ଜ ବିହୀନ ଗରିଲା ଜାତୀୟ ମାଙ୍କଡ଼ । ମୁହଁର ଧାରେ ଧାରେ ବଳୟ ପରି ବଡ଼ ବଡ଼ ଲୁମ ଘେରିଥିବା ସିଂହ ଲାଞ୍ଜିଆ ମାଙ୍କଡ଼ (Macaque) ଦେଶର ଦକ୍ଷିଣାଞ୍ଚଳରେ ଦେଖିବାକୁ ମିଳେ ।

ରଙ୍ଗବେରଙ୍ଗ ପକ୍ଷୀ ସମ୍ପଦରେ ଭାରତବର୍ଷ ଭରପୂର ହୋଇ ରହିଛି । ଆମର ଜାତୀୟ ପକ୍ଷୀ, ଭାରତୀୟ ମୟୂର ଅତି ସୁନ୍ଦର ପକ୍ଷୀମାନଙ୍କ ମଧ୍ୟରୁ ଅନ୍ୟତମ । ବିଶେଷ କରି ଅଣ୍ଡିରା ମୟୂରର ଚିକ୍ ଚିକ୍ କରୁଥିବା ନୀଳ ରଙ୍ଗର ବେକ, ପଙ୍ଖାକୃତି ଚୂଳ ଓ ଚମତ୍କାର ଲମ୍ବା ଲାଞ୍ଜ ଦେଖିବାକୁ ଖୁବ୍ ସୁନ୍ଦର । ମୟୂରୀ ପାଖରେ ପୁଚ୍ଛକୁ ବିସ୍ତାର କରି ପ୍ରେମପ୍ରାର୍ଥୀ ମୟୂରର ନୃତ୍ୟ ଅତୀବ ଦର୍ଶନୀୟ । ଆବହମାନ କାଳରୁ ଭାରତୀୟ ସାହିତ୍ୟ, ପୁରାଣ ଓ ଲୋକ କଥାରେ ଏହି ପକ୍ଷୀକୁ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଛି । ମୟୂରମାନେ ସମତଳ ଅଞ୍ଚଳରେ ସର୍ବତ୍ର ଦେଖିବାକୁ ମିଳନ୍ତି । ମାତ୍ର ଏମାନେ ମୁଖ୍ୟତଃ ଉତ୍ତର ଭାରତରେ ଶୁଷ୍କ ଓ ଖୋଲା ଜାଗାରେ ବହୁ ସଂଖ୍ୟାରେ ବାସ କରନ୍ତି । ଫେଜାଣ୍ଟ ପକ୍ଷୀ, ରାଜହଂସ, ବତକ, ଶୁଆ, ପାରା, ବଗ, କୋଚିଲାଖାଇ ଓ ସୂର୍ଯ୍ୟପକ୍ଷୀ (Sun bird) ଆଦି ଅନେକ ଜାତିର ଚଢେଇ ଦେଶର ଜଙ୍ଗଲ ଓ ସନ୍ତସନ୍ତିଆ ସ୍ଥାନ ମାନଙ୍କରେ ବାସ କରନ୍ତି ।

ବିଶାଳ ହିମାଳୟ ପର୍ବତମାଳାର ଜୈବିକ ସମ୍ପଦ ଅତ୍ୟନ୍ତ ମନୋରମ; ଯେଉଁଥିରେ ଜଙ୍ଗଲୀ ମେଣ୍ଢା ଓ ଜଙ୍ଗଲୀ ଛେଳି ଆଦି ଅନ୍ତର୍ଭୁକ୍ତ । ଉକ୍ତ ପାର୍ବତ୍ୟ ପରିସର ମଧ୍ୟରେ ହିମାଳୟ ପାଣ୍ଡା ଓ ତୁଷାର ଚିତାବାଘ ମଧ୍ୟ ଦେଖିବାକୁ ମିଳନ୍ତି ।

ନାନା ଜାତିର ଉତ୍କୃଷ୍ଟ ସ୍ତନ୍ୟପାୟୀ ପ୍ରାଣୀ ଓ ପକ୍ଷୀମାନଙ୍କ ଛଡ଼ା ଭାରତରେ ବହୁ ପ୍ରକାରର ମାଛ, ସରୀସୃପ, ଉଭୟଚର ପ୍ରାଣୀ ଭରି ରହିଛନ୍ତି । ସରୀସୃପ ମାନଙ୍କର ମଧ୍ୟରେ ସମୁଦ୍ରକଇଁଛ (ପୃଥିବୀରେ ବଞ୍ଚିରହିଥିବା ସବୁଠାରୁ ବଡ଼ କଇଁଛ), ଟାଣପିଠିଆ ପଥର କଇଁଛ; ଶାଗୁଆ ସମୁଦ୍ର କଇଁଛ ଓ ଅନେକ ଜାତିର ପାଣି କଇଁଛ ଉଲ୍ଲେଖ ଯୋଗ୍ୟ ।

ଏ ଦେଶରେ ଦେଖାଯାଉଥିବା କୁମ୍ଭୀର ମାନଙ୍କ ମଧ୍ୟରେ ଅଛନ୍ତି ଖଣ୍ଡିଆ କୁମ୍ଭୀର, ବଉଳା କୁମ୍ଭୀର ଓ ଗୋମୁହାଁ କୁମ୍ଭୀର । ଏଣୁଅ ଜାତିର ପ୍ରାଣୀ ମାନଙ୍କ ମଧ୍ୟରେ ବିଭିନ୍ନ ଜାତିର ଗୋଧି,

ସାପମାନଙ୍କ ମଧ୍ୟରେ ବିଷଧର ଗୋଖର ଠାରୁ ଆରମ୍ଭ କରି ବିଷହୀନ ସାଧାରଣ ଡାମଣା ସାପ ପର୍ଯ୍ୟନ୍ତ ବିଭିନ୍ନ ଜାତିର ସାପ ଏବଂ ଉଭୟଚର ଜୀବ ମାନଙ୍କ ମଧ୍ୟରେ ଶତାଧିକ ଜାତିର ସାନବଡ଼ ବେଙ୍ଗ ଓ କେତେ ଜାତିର ସାଲାମାଣ୍ଡର (Salamanders) ଦେଖାଯାଆନ୍ତି । ହ୍ରଦ, ନଦୀ ଓ ସମୁଦ୍ରରେ ଅନେକ ଜାତିର ମାଛ ବାସ କରନ୍ତି ।

ଏହାଛଡ଼ା ଏକକୋଷୀ ପ୍ରାଣୀଙ୍କ ଠାରୁ ଆରମ୍ଭ କରି ନାନାଦି ଦର୍ଶନୀୟ ସୁନ୍ଦର କୀଟ ପତଙ୍ଗ ଓ ଗେଣ୍ଡା ଜାତୀୟ ଜୀବ ଭାରତର ବିଭିନ୍ନ କିସମର ଜଳବାୟୁରେ ବିପୁଳ ସଂଖ୍ୟାରେ ଭରି ରହିଛନ୍ତି ।

32.9 କୋଟି ହେକ୍ଟର ପରିମିତ ଭୂମି ଓ 7516 କିଲୋମିଟର ଦୈର୍ଘ୍ୟ ବିଶିଷ୍ଟ ସମୁଦ୍ର ଉପକୂଳ ସହିତ ନଦୀ, ହ୍ରଦ, ପ୍ରକାଣ୍ଡ ହିମାଳୟ ପର୍ବତଶ୍ରେଣୀ, ଅଗଣିତ ପାହାଡ଼ ପର୍ବତ, ରାଜସ୍ଥାନର ମରୁଭୂମି, ମାଳଭୂମି, ଜଳଜମି ଓ ଦ୍ୱୀପପୁଞ୍ଜକୁ (ଆଣ୍ଡାମାନ, ନିକୋବର ଓ ଲାକ୍ଷାଦ୍ୱୀପ) ନେଇ ଭାରତବର୍ଷ ଯେ କେବଳ ଏକ ଭୌଗଳିକ ଅସମତାର ବର୍ଣ୍ଣମାଳା ସୃଷ୍ଟି କରିଛି ତାହା ନୁହେଁ, ସମପରିମାଣର ବୈଷମ୍ୟ ଓ ସୌନ୍ଦର୍ଯ୍ୟରେ ଭରା ବୃକ୍ଷଲତା ଓ ଜୀବଜନ୍ତୁରେ ମଧ୍ୟ ଏ ଦେଶ ପରିପୂର୍ଣ୍ଣ ହୋଇ ରହିଛି ।



# ବନ୍ୟପ୍ରାଣୀଙ୍କ ଅବକ୍ଷୟ

ଜୀବଜନ୍ତୁ ଓ ଉଦ୍ଭିଦ ମାନଙ୍କର ସ୍ୱାସ୍ଥ୍ୟ ଓ ସମୃଦ୍ଧି ଅନେକ ବିଷୟ ଉପରେ ନିର୍ଭର କରେ । ଉପଯୁକ୍ତ ଜଳବାୟୁ, ଖାଦ୍ୟ, ଜଳ ଓ ଆଶ୍ରୟସ୍ଥଳୀ ହେଉଛି ସମସ୍ତ ପ୍ରାଣୀଙ୍କର ମୌଳିକ ଆବଶ୍ୟକତା । ଜୀବଜନ୍ତୁ ଓ ଉଦ୍ଭିଦ ମାନେ କିପରି ପ୍ରାକୃତିକ ବିଭବକୁ ଆପଣା ଭିତରେ ବାଣ୍ଟିନେଇ, ବିଭିନ୍ନ ପ୍ରତିକୂଳ ପରିସ୍ଥିତିରେ ନିଜକୁ ଖାପ ଖୁଆଇ ସେମାନଙ୍କର ସଂଖ୍ୟାକୁ ସଠିକ୍ ରଖିପାରନ୍ତି, ପ୍ରତ୍ୟେକ ପାରିବେଶିକ ବ୍ୟବସ୍ଥା (eco system) ହେଉଛି ତାହାର ଗୋଟିଏ ଗୋଟିଏ ଉଦାହରଣ । ପୃଥିବୀର ବାତାବରଣରେ ଅନେକ ପରିବର୍ତ୍ତନ ହୋଇଛି । ଆଜିକାର ପ୍ରାଣୀମାନେ ଏହି ପରିବର୍ତ୍ତନଶୀଳ ବାତାବରଣ ସହିତ ଖାପଖୁଆଇ ଚଳିବାର ପ୍ରଚେଷ୍ଟା ଓ ବିବର୍ତ୍ତନର ଫଳ ସ୍ୱରୂପ ସୃଷ୍ଟି ହୋଇଛନ୍ତି ।

କୋଟି କୋଟି ବର୍ଷ ନେଇ ପ୍ରାକୃତିକ ପାରିବେଶିକ ବ୍ୟବସ୍ଥା ଗୁଡ଼ିକର କ୍ରମବିକାଶ ଘଟିଛି । ପ୍ରାଣୀମାନଙ୍କ ସଂଖ୍ୟା ବୃଦ୍ଧିରେ ମୌଳିକ ସ୍ଥିରତା ହେତୁ ଯେଉଁ ପ୍ରାକୃତିକ ଭାରସାମ୍ୟ ହୋଇ ପାରିଛି, ତାହାହିଁ ପାରିବେଶିକ ବ୍ୟବସ୍ଥାର ଏକ ଉଲ୍ଲେଖନୀୟ ବୈଶିଷ୍ଟ୍ୟ । ଯଦି କେବଳ ଏକ ନିର୍ଦ୍ଦିଷ୍ଟ ଜାତିର ଜନ୍ତୁ ମାନଙ୍କ ବଂଶବୃଦ୍ଧି ହୁଅନ୍ତା, ତେବେ ସେମାନଙ୍କର ଆବାସସ୍ଥଳୀରେ ମାତ୍ରାଧିକ ସଂଖ୍ୟା ହେତୁ ପ୍ରତିଟି ଜନ୍ତୁ ପାଇଁ ଖାଦ୍ୟର ଉତ୍ସ ଦୁଷ୍ପ୍ରାପ୍ୟ ହୋଇ ଯାଆନ୍ତା । ଅନେକ ଜନ୍ତୁ ଖୁବ୍ ଦ୍ରୁତ ଗତିରେ ବଂଶ ବୃଦ୍ଧି କରିଥା'ନ୍ତି । କୀଟମାନେ ହଜାର ହଜାର ଅଣ୍ଡା ଦିଅନ୍ତି । ମୂଷାମାନେ 100 ରୁ 120 ଛୁଆ ଜନ୍ମ କରନ୍ତି । କେତେକ ଜାତିର ମାଛ ଥରକେ ଲକ୍ଷ ଲକ୍ଷ ଅଣ୍ଡା ଦିଅନ୍ତି । ହଳେ ମାଛି ଅବାଧିତ ଭାବରେ ବଂଶ ବଢ଼ାଇଲେ ତିନିବର୍ଷ ଭିତରେ ସେମାନଙ୍କର ସଂଖ୍ୟା ଏତେ ବୃଦ୍ଧି ପାଇବ ଯେ, ତାଙ୍କ ଓଜନ ପୃଥିବୀର ଓଜନ ଠାରୁ ବଳି ପଡ଼ିବ । ଏପରିକି ମନ୍ଥର ଭାବରେ ବଂଶବୃଦ୍ଧି କରୁଥିବା ଜନ୍ତୁ ହାତୀ ସୁଯୋଗ ମିଳିଲେ 190 ଲକ୍ଷ ପର୍ଯ୍ୟନ୍ତ ଛୁଆ ଜନ୍ମ କରିପାରିବ ।

ଆଶ୍ଚର୍ଯ୍ୟ ଲାଗୁଛି ? ନୁହେଁ କି ? ତେବେ ପୃଥିବୀ ବକ୍ଷରେ ଏପରି ଘଟୁନାହିଁ କାହିଁକି ? ଜନ୍ତୁମାନଙ୍କର ସଂଖ୍ୟା ନିୟନ୍ତ୍ରଣ କରିଛି କିଏ ? ନିୟନ୍ତ୍ରଣ କାରୀ ପ୍ରକ୍ରିୟା ଗୁଡ଼ିକ ମଧ୍ୟରୁ ଅନ୍ୟତମ ହେଉଛି ଜନ୍ତୁମାନଙ୍କର ମଧ୍ୟରେ ଖାଦ୍ୟ ପାଇଁ ପ୍ରତିଯୋଗିତା । ସମଜାତିର ଜନ୍ତୁ ମାନଙ୍କ ମଧ୍ୟରେ ଏକମାତ୍ର ଖାଦ୍ୟର ଉତ୍ସ ପାଇଁ ପ୍ରତିଯୋଗିତାର ପ୍ରତିକୂଳ ପ୍ରଭାବ ସ୍ୱରୂପ ଦୁର୍ବଳ ଜନ୍ତୁମାନେ ପ୍ରାଣ ହରାନ୍ତି । ଅଧିକ ସଂଖ୍ୟାବୃଦ୍ଧି ଘଟି ଗହଳି ହେଲେ ରୋଗ ଓ ପୌଷ୍ଟିକତାର ଅଭାବ ହେତୁରୁ ଅନେକ ଜନ୍ତୁ ଲୋପ ପାଆନ୍ତି । ଶିକାର ବୃତ୍ତି ମଧ୍ୟ ସେମାନଙ୍କର ଧ୍ୱଂସର ଅନ୍ୟଏକ କାରଣ । ପ୍ରାକୃତିକ ବିଧାନ ଅନୁଯାୟୀ ମାଂସାଶୀ ପ୍ରାଣୀମାନେ ବଞ୍ଚିବା ପାଇଁ ତୃଣଭୋଜୀ ପ୍ରାଣୀମାନଙ୍କ ଉପରେ ନିର୍ଭରଶୀଳ, ଯାହାକି ପୂର୍ବବର୍ଣ୍ଣିତ ଖାଦ୍ୟ ଶିକୁଳି ପ୍ରକ୍ରିୟାରୁ ସ୍ପଷ୍ଟ ହୋଇଛି । ଏହାଛଡ଼ା ପ୍ରତିକୂଳ ପାଗ, ପ୍ରାକୃତିକ ଦୁର୍ବିପାକ, ବାସସ୍ଥଳୀର ଅବକ୍ଷୟ ଆଦି ଘଟିଲେ ଜନ୍ତୁମାନଙ୍କ ସଂଖ୍ୟା ନିୟନ୍ତ୍ରିତ ହୋଇଥାଏ । ଏହିଭଳି ଭାବରେ ବିଭିନ୍ନ ପ୍ରକ୍ରିୟାଦ୍ୱାରା ପରିବେଷ୍ଟନୀର ବହନ ସାମର୍ଥ୍ୟ ଅନୁଯାୟୀ ଜନ୍ତୁମାନଙ୍କର ବଂଶ ନିୟନ୍ତ୍ରଣ ହୋଇଥାଏ । ସହଜଲଭ୍ୟ ପ୍ରାକୃତିକ ବିଭବ ଉପରେ ନିର୍ଭର କରି ସବୁ ପାରିବେଶିକ ବ୍ୟବସ୍ଥାରେ ଏକ ନିର୍ଦ୍ଦିଷ୍ଟସଂଖ୍ୟକ ଜନ୍ତୁ ବଞ୍ଚି ରହି ପାରନ୍ତି । ପାରିବେଶିକ ବ୍ୟବସ୍ଥାର ବହନ ସାମର୍ଥ୍ୟ ହିଁ ପରସ୍ପର ନିର୍ଭରଶୀଳ ଓ ସମ୍ପର୍କିତ ଜନ୍ତୁ ମାନଙ୍କ ମଧ୍ୟରେ ଥିବା ସୂକ୍ଷ୍ମ ଭାରସାମ୍ୟର ମୂଳ କାରଣ ।

ପ୍ରତ୍ୟେକ ପାରିବେଶିକ ବ୍ୟବସ୍ଥା କେତେକ ନିର୍ଦ୍ଦିଷ୍ଟ କିସମର ପ୍ରାଣୀଙ୍କୁ ସମ୍ଭାଳି ପାରେ, ଯେଉଁମାନେ ସେମାନଙ୍କର ପରିବେଶ ସହ ନିଜକୁ ଖାପ ଖୁଆଇ ଏବଂ ନିଜର ଚାରିପାଖରେ ପାର୍ଥିବ ଜଗତରେ ତଥା ଅନ୍ୟାନ୍ୟ ପ୍ରାଣୀମାନଙ୍କ ସହ  ନିଜର ଆନ୍ତଃନିର୍ଭରଶୀଳତାଜନିତ ପ୍ରକ୍ରିୟାରେ ଭାଗ ନେଇ ଚଳନ୍ତି । ଉଦ୍ଭିଦ ମାନଙ୍କ ଦ୍ୱାରା ଜବଦ୍ଧିତ ଶକ୍ତି ପ୍ରାଣୀମାନଙ୍କ ଜରିଆରେ ହସ୍ତାନ୍ତର ହୁଏ । ମୃତ୍ତିକାରୁ ଗୃହୀତ ଖାଦ୍ୟସାର ଗୁଡ଼ିକ ମୃତ୍ୟୁ ପରେ ଶରୀର ଗଳିତ ଓ ପଚିତ ହେବା ଯୋଗୁଁ ପୁଣି ମାଟିରେ ମିଶିଯାଏ । ନୂଆ ଜୀବନ ମୃତ୍ୟୁର ସ୍ଥାନ ପୂରଣ କରେ । ବର୍ଷ ପରେ ବର୍ଷ ଶତାବ୍ଦୀ ପରେ ଶତାବ୍ଦୀ ହୋଇ ଏହି ଯେଉଁ ଅବୋଧ ଓ ଜଟିଳ ପ୍ରକ୍ରିୟା ହଜାର ହଜାର ବର୍ଷରେ ପଦାର୍ପଣ କଲାଣି, ତାକୁ ଆମେ "ପ୍ରାକୃତିକ ଭାରସାମ୍ୟ" ବୋଲି କହୁ ।

## ପ୍ରାଣୀମାନଙ୍କ ପ୍ରାକୃତିକ ବିଲୁପ୍ତି

ପର୍ଯ୍ୟାବରଣର ଆପାତତଃ ସ୍ଥିର ଓ ଯୌଗିକ ପ୍ରକୃତି ସତ୍ତ୍ୱେ ଏକ ବିପୁଳ ସଂଖ୍ୟକ ଜୀବ, ଯେଉଁମାନେ ପ୍ରାକ୍ ଐତିହାସିକ ଯୁଗରେ ଘୂରି ବୁଲୁଥିଲେ, କାଳକ୍ରମେ ଭୂପୃଷ୍ଠରୁ ବିଲୁପ୍ତ ହୋଇ ଯାଇଛନ୍ତି । ପ୍ରାଣୀମାନଙ୍କ ବିବର୍ତ୍ତନ ମଧ୍ୟରେ ବିଲୁପ୍ତି ଏକ ପ୍ରାକୃତିକ ପ୍ରକ୍ରିୟା ଅଟେ । କେତେକ ଜାତିର ପ୍ରାଣୀ ପରିବେଶକୁ ନିବିଡ଼ ଭାବରେ ଗ୍ରହଣ କରିନେଇ ପାରୁଥିବା ଅନ୍ୟ ଜାତିର ପ୍ରାଣୀମାନଙ୍କ ସହିତ ପ୍ରତିଯୋଗିତାରେ ପରାସ୍ତ ହୋଇ କାଳକ୍ରମେ ଅଦୃଶ୍ୟ ହୋଇ ଯାଆନ୍ତି । ବେଳେବେଳେ ବହୁସଂଖ୍ୟକ ପ୍ରାଣୀ ପୃଥିବୀରୁ ଏକ ସମୟରେ ବିଲୁପ୍ତ ହୋଇଯିବାର ଦେଖାଯାଇଛି । ଯେପରି ଡାଇନୋସର ମାନଙ୍କ କ୍ଷେତ୍ରରେ ଘଟିଥିଲା । ପ୍ରାୟ ସାତ କୋଟି ବର୍ଷ ତଳେ କ୍ରେଟାସିୟସ୍

ଯୁଗ (Cretaceous Period)ର ଶେଷ ଭାଗକୁ ଡ଼ାଇନୋସରମାନେ ଲୋପ ପାଇଗଲେ । ମାମଥ୍ ଓ ମାଷ୍ଟୋଡୋନ୍ ପରି ଅନେକ ସ୍ତନ୍ୟପାୟୀ ପ୍ରାଣୀ ମଧ୍ୟ ଲୋପ ପାଇସାରିଛନ୍ତି । ଅସଂଖ୍ୟ ଅନ୍ୟ କିସମର ଜୀବଜନ୍ତୁ ଓ ଉଦ୍ଭିଦ ଉଦ୍ଭବ ହୋଇ ଆସି ପୁଣି ବିଲୁପ୍ତ ହୋଇ ଯାଇଛନ୍ତି । ଜୀବାଶ୍ମରେ ସଞ୍ଚିତ ସେମାନଙ୍କ ପ୍ରସ୍ତରୀଭୂତ ଦେହାବଶେଷ ବା ଜୀବାଶ୍ମରୁ ଆମେ ସେମାନଙ୍କ ବିଷୟରେ ଜାଣିପାରୁ । ବିଲୁପ୍ତି ଅପରିବର୍ତ୍ତନୀୟ ଏବଂ ବିବର୍ତ୍ତନ ପ୍ରକ୍ରିୟାର ଏକ ଅଂଶ । କୋଟି କୋଟି ବର୍ଷ ଧରି ଏହା ବିବର୍ତ୍ତନ ପ୍ରକ୍ରିୟାର ଏକ ଅଙ୍ଗରୂପେ ଅଧିକରୁ ଅଧିକ ଉନ୍ନତ ଜୀବମାନଙ୍କୁ ସୃଷ୍ଟି କରିଛି । "ବିବର୍ତ୍ତନ ମତବାଦ" ହେଉଛି ଚାର୍ଲସ ଡ଼ାରଉଇନଙ୍କର ସର୍ବଶ୍ରେଷ୍ଠ ଦାନ, ଯେଉଁଥିରେ ସେ ଜୀବନର ସୃଷ୍ଟି ତଥା ଜୀବମାନଙ୍କର ବିବର୍ତ୍ତନଗତ ପରିବର୍ତ୍ତନ ବିଷୟରେ ଯୁକ୍ତିଯୁକ୍ତ ବ୍ୟାଖ୍ୟା କରିଛନ୍ତି । ତାଙ୍କ ବର୍ଣ୍ଣିତ "ପ୍ରାକୃତିକ ମନୋନୟନ" ହେଉଛି ପରିବେଶ ସହିତ ଖାପଖୁଆଇ ବଞ୍ଚିରହି ବଂଶ ବୃଦ୍ଧି କରିପାରୁଥିବା ପ୍ରାଣୀମାନଙ୍କର ସାଫଲ୍ୟ ।

ମଣିଷ ଆବିର୍ଭାବର ବହୁପୂର୍ବରୁ କୋଟି କୋଟି ବର୍ଷ ଧରି ଜାତି ପରେ ଜାତି ଜୀବମାନଙ୍କର ବିଲୋପ ଘଟିସାରିଛି । ପ୍ରକୃତି ସହିତ ସାମଞ୍ଜସ୍ୟ ରକ୍ଷା କରି ଆଦିମାନବ ବାସ କରୁଥିଲା ଓ ଜୀବଜନ୍ତୁମାନଙ୍କ ବିଲୁପ୍ତିର କାରଣ ହୋଇନଥିଲା । ମାତ୍ର ପୃଥିବୀବ୍ୟାପୀ ମାନବ ସଭ୍ୟତାର ବିସ୍ତାର ତଥା ସ୍ୱାର୍ଥାନ୍ୱେଷୀ ମାନବ ଦ୍ୱାରା ପ୍ରକୃତିର କ୍ରମବର୍ଦ୍ଧିଷ୍ଣୁ ମାତ୍ରାଧିକ ବିନିଯୋଗ ହୋଇଚାଲିବା ଫଳରେ ଜୀବଜନ୍ତୁମାନଙ୍କ ଉପରେ ଏହାର ପ୍ରତିକୂଳ ପ୍ରଭାବ ପଡ଼ିଲା । ଜନ୍ତୁ ଶିକାର, ପାରିପାର୍ଶ୍ୱିକ ଅବସ୍ଥାର ପରିବର୍ତ୍ତନ, ଆବାସସ୍ଥଳୀର ଧ୍ୱଂସସାଧନ, ଜଳ ସ୍ଥଳ ଓ ଆକାଶର ପ୍ରଦୂଷଣ, ଜନସଂଖ୍ୟା ବିସ୍ଫୋରଣ ଇତ୍ୟାଦି ସାମ୍ପ୍ରତିକ ସମୟରେ ନାନା ଜାତିର ଜୀବମାନଙ୍କ ବିଲୁପ୍ତିର କାରଣ ହୋଇଛି । ସପ୍ତଦଶ ଶତାବ୍ଦୀରୁ ଏଯାବତ୍ ପ୍ରାୟ 120 ଜାତିର ସ୍ତନ୍ୟପାୟୀ ପ୍ରାଣୀ ଓ 150ଜାତିର ପକ୍ଷୀଙ୍କର ବଂଶ ଲୋପ ପାଇସାରିଛି । ଶିଳ୍ପଯୁଗ ପ୍ରାରମ୍ଭରୁ ମଣିଷର ହସ୍ତକ୍ଷେପ ଯୋଗୁଁ ପ୍ରାଣୀମାନଙ୍କ ବିଲୁପ୍ତିର ମାତ୍ରା ବଢ଼ିଚାଲିଛି ।

ମରିସସ୍‌ର ଡୋଡୋ ପକ୍ଷୀ, ଉତ୍ତର ଆମେରିକାର ଯାତ୍ରୀପାରା (Passenger Pigeon) ମାଡ଼ାଗାସ୍କାରର ହାତୀ ଚଢ଼େଇ (Elephant bird), ଫ୍ଲୋରିଡାର ଚିତ୍ରିତ ଶାଗୁଣା(Painted Vulture),ଦକ୍ଷିଣ ଆଫ୍ରିକାର କେପ୍ ସିଂହ ଓ କ୍ୱାଗା (Quagga) ଆଦି ବିଗତ ଶତାବ୍ଦୀରେ ଲୋପ ପାଇ ଯାଇଥିବା ପ୍ରାଣୀମାନଙ୍କ ମଧ୍ୟରୁ ଅନ୍ୟତମ ।

ଚଳିତ ଶତାବ୍ଦୀରେ ଭାରତରେ ଚିତାବାଘ, ଏକଶିଂଘିଆ ଗଣ୍ଡା, ନାଲିମୁଣ୍ଡିଆ ହଂସ, ପାହାଡ଼ିଆ ଗୁଣ୍ଡୁରିଚଢ଼େଇ ଆଦି ଜୀବମାନଙ୍କର ବଂଶ ଲୋପ ପାଇସାରିଛି । ପ୍ରାକୃତିକ ଶ୍ରେଣୀ ବିନ୍ୟାସ କ୍ଷୀଣ ହୋଇ ଆସିବା ତଥା ଅଧିକ ଜଙ୍ଗଲ ନଷ୍ଟ ହେବା ଯୋଗୁଁ ଅନେକ ସ୍ତନ୍ୟପାୟୀ ପ୍ରାଣୀ ଓ ପକ୍ଷୀମାନେ କ୍ୱଚିତ୍ ଦେଖିବାକୁ ମିଳୁଛନ୍ତି ଏବଂ ସେମାନଙ୍କର ସ୍ଥିତି ବିପଦଗ୍ରସ୍ତ ହୋଇପଡ଼ିଛି । ଏପରି ଜୀବମାନେ ଅଧିକାଂଶ କ୍ଷେତ୍ରରେ କ୍ଷୁଦ୍ର ଭୂଖଣ୍ଡରେ ସୀମିତ ଭାବରେ ବସବାସ କରିବା ଦେଖା ଯାଉଛି ।

## ପ୍ରାଣୀ କିପରି ବିପନ୍ନ ହୁଅନ୍ତି

କ୍ରିବର୍ତ୍ତନ ପଦ୍ଧତିରେ ନାନା ଜାତି ଜୀବମାନଙ୍କର ବିଲୁପ୍ତି ହେଉଛି ପରିବର୍ତ୍ତନଶୀଳ ପାରିପାର୍ଶ୍ୱିକ ଅବସ୍ଥା ସହିତ ଖାପଖୁଆଇ ବଞ୍ଚି ପାରୁଥିବା ଅଧିକ ଉନ୍ନତ ଜୀବ ସୃଷ୍ଟି କରିବାର ପ୍ରାକୃତିକ ଉପାୟ । ନିକଟ ଅତୀତରେ ଅନେକ ଜାତିର ଜୀବ ମଣିଷର ଧ୍ୱଂସାତ୍ମକ କାର୍ଯ୍ୟକଳାପ ଯୋଗୁଁ ଲୋପ ପାଇଯାଇଛନ୍ତି । ଡୋଡୋ ପକ୍ଷୀ, ଯାତ୍ରୀପାରା (Passenger Pigeon) ଓ ଭାରତୀୟ ଚିତାବାଘ ବିବର୍ତ୍ତନ ପଦ୍ଧତିର ଅଂଶବିଶେଷ ଭାବରେ ବିଲୁପ୍ତ ହୋଇନାହାନ୍ତି । ମାତ୍ର ଶିକାର ଦ୍ୱାରା ସେମାନଙ୍କ ବଂଶ ଲୋପ କରାଯାଇଛି । ଶିଳ୍ପ ବିସ୍ତାର ଫଳରେ ପ୍ରାକୃତିକ ସମ୍ପଦକୁ ନିଜ ସ୍ୱାର୍ଥରେ ଲଗାଇବା ଉଦ୍ଦେଶ୍ୟରେ ଜଳ,ସ୍ଥଳ,ଆକାଶ, ପ୍ରାଣୀ, ଉଦ୍ଭିଦ ସମେତ ସମସ୍ତ ପରିବେଶ ଉପରେ ମଣିଷର ଚାପ ଯୋଗୁଁ ନିକଟ ଅତୀତରେ ଅନେକ ଜାତିର ଜୀବ ବିଲୁପ୍ତ ହୋଇ ଯାଇଛନ୍ତି ଏବଂ ଅନ୍ୟ ବହୁ ଜାତିର ଜୀବମାନେ ବିଲୁପ୍ତି ଅଭିମୁଖେ ଗତି କରୁଛନ୍ତି ।

ଉପରୋକ୍ତ ଆଲୋଚନା ଏଭଳି ବହୁଜାତିର ପ୍ରାଣୀଙ୍କ ବିଷୟରେ ସୂଚନା ଦିଏ, ଯେଉଁମାନଙ୍କ ସୁରକ୍ଷା ଦିଗରେ ଯତ୍ନବାନ ନହେଲେ ସେମାନେ ଅତିଶୀଘ୍ର ଧ୍ୱଂସ ପାଇଯିବେ । ସହରାଞ୍ଚଳର ବିସ୍ତାର, ଅରଣ୍ୟ ବିଧ୍ୱଂସନ, ରାସ୍ତା, ରେଳପଥ ଓ ଜଳସେଚନ ବନ୍ଧ ଆଦିର ନିର୍ମାଣ, କୀଟନାଶକ ଔଷଧର ଅବାଧ ବ୍ୟବହାର, ପ୍ରଦୂଷଣ ଓ ଅବାଧ ପଶୁ ଶିକାର ଆଦି କାର୍ଯ୍ୟ ପଶୁ ସଂଖ୍ୟା ହ୍ରାସ କରିବା ସଂଗେ ସଙ୍ଗେ ସେମାନଙ୍କର ଶୃଙ୍ଖଳିତ ବିସ୍ତାର ବିନ୍ୟାସର ଧାରାକୁ ପରିବର୍ତ୍ତନ କରି ଦେଇଛି ।

## ବାସସ୍ଥଳ ବିଧ୍ୱଂସନ

ମନେ କରନ୍ତୁ, ଗୋଟିଏ କାରଖାନା ତିଆରି କରିବା ପାଇଁ କିମ୍ବା ଫୁଟବଲ ଷ୍ଟାଡିୟମଟିଏ ଗଢିବା ପାଇଁ ଅଜାଣତରେ ଆପଣଙ୍କ ଘର ଉପରେ ବୁଲ୍‌ଡୋଜର ଚଳାଇ ଦିଆଯାଇଥିବ । ଆପଣଙ୍କ ଘରକୁ ନଷ୍ଟ କରି ତା'ସହିତ ପରିବାରର କେତେକ ଲୋକଙ୍କୁ ମାରିଦିଆଯାଇଥିବ ବା କ୍ଷତ ବିକ୍ଷତ କରି ଦିଆଯାଇଥିବ । ଏଭଳି ପରିସ୍ଥିତିରେ କାହାକୁ ଆପତ୍ତି କରିବାର ନଥିବ କିମ୍ବା ଆପଣ କାହାପାଖକୁ ଯାଇପାରୁନଥିବେ । ଏକ ଧ୍ୱସ୍ତ ବିଧ୍ୱସ୍ତ ନିର୍ଦ୍ଦୟ ପରିପାର୍ଶ୍ୱ ମଧ୍ୟରେ ଆପଣ ଅନାହାର ଓ ରୋଗ ବ୍ୟାଧିର ଶିକାର ହେଉଥିବେ । ଏହି ଦୁର୍ଦ୍ଦଶାରୁ ରକ୍ଷା ପାଇଥିବା ଆପଣଙ୍କ ନିଜ ଲୋକେ ପୁନର୍ବସତି ଲାଗି ବାସସ୍ଥାନ ଖୋଜି ବୁଲୁଥିବେ କିମ୍ବା ପଳାଇଯାଇ ଏକ ନିରାପଦ ସ୍ଥାନରେ ରହିବାକୁ ଚେଷ୍ଟା କରୁଥିବେ । ମାତ୍ର ଏଥିରେ ସେମାନେ କୃତକାର୍ଯ୍ୟ ହେବାର ସ୍ଥିରତା ନଥିବ । କେମିତି ଲାଗିବ ଆପଣଙ୍କୁ ? ବର୍ଦ୍ଧିତ ଜନସଂଖ୍ୟାର ବିକାଶାତ୍ମକ ଆବଶ୍ୟକତା ପୂରଣ କରିବାକୁ ଯାଇ ମଣିଷ କରୁଥିବା କାର୍ଯ୍ୟକଳାପ ଯୋଗୁଁ ବିଭିନ୍ନ ଜାତିର ପଶୁମାନଙ୍କ କ୍ଷେତ୍ରରେ ଠିକ୍ ଏହାହିଁ ଘଟିଛି ।

ଅରଣ୍ୟର ବିନାଶ ବନ୍ୟପ୍ରାଣୀ ମାନଙ୍କର ସଂଖ୍ୟା ହ୍ରାସ ପାଇବାର ଏକ ପ୍ରଧାନ କାରଣ ।

ଜନସଂଖ୍ୟା ବୃଦ୍ଧି ପାଇବା ସଂଗେ ସଂଗେ, ମାନବ ସମାଜର ଆବଶ୍ୟକତା ବଢ଼ିଲା । ତା'କୁ ପୂରଣ କରିବାକୁ ଜଙ୍ଗଲ କାଟି ପରିଷ୍କାର କରି ତହିଁରେ କୃଷିକାର୍ଯ୍ୟ, ଗୃହନିର୍ମାଣ ଓ ପଶୁଚାରଣ ବ୍ୟବସ୍ଥା କରାଗଲା । ପ୍ରୟୋଗାତ୍ମକ ପ୍ରଗତି ଓ ମାନବ ସମାଜର ଉନ୍ନତି ସହିତ ପ୍ରାକୃତିକ ସମ୍ପଦକୁ ମଣିଷର ସ୍ୱାର୍ଥ ଦୃଷ୍ଟିରୁ ବ୍ୟବହାର କରିବାର ସିଧାସଳଖ ସମ୍ପର୍କ ରହିଲା । ଜଙ୍ଗଲରୁ ଗଛ କାଟି ତହିଁରୁ ଘର ଓ ଆସବାବପତ୍ର ତିଆରି କରିବାକୁ କାଠ ଓ ରାନ୍ଧିବା ଲାଗି ଜାଳେଣି ସଂଗ୍ରହ କରାଗଲା । ଶିଳ୍ପ କ୍ଷେତ୍ରରେ ଅରଣ୍ୟ ସମ୍ପଦର ଅଧିକ ଆବଶ୍ୟକତା ଦେଖାଗଲା । ଯଥା: କାଗଜ ତିଆରି ପାଇଁ କାଠ, ଜଙ୍ଗଲ ଜମିରେ ଖଣି ଖୋଳି ଧାତୁ ସଂଗ୍ରହ; ଗୃହୋପକରଣ ତଥା ଅଠା ଓ ଚୁଣା ଆଦି ପାଇଁ ଅରଣ୍ୟକୁ ଶୋଷଣ କରାଗଲା ।

ବନ୍ୟପ୍ରାଣୀମାନଙ୍କର ବାସସ୍ଥଳୀ ଜଙ୍ଗଲ କଟା ହେବା ଫଳରେ ସେମାନଙ୍କ ଉପରେ ପ୍ରତିକୂଳ ପ୍ରଭାବ ପଡ଼ିଛି, କାରଣ, ଯେଉଁ ପରିବେଷ୍ଟନୀ ସେମାନଙ୍କୁ ଖାଦ୍ୟ ଯୋଗାଏ, ବସା ବାନ୍ଧିବା ପାଇଁ ଜାଗା ଦିଏ, ବଂଶବୃଦ୍ଧି ଓ ଶିଶୁମାନଙ୍କୁ ଲାଳନ ପାଳନ କରିବା ପାଇଁ ସୁବିଧା ଦିଏ, ତାହା ଜଙ୍ଗଲ କଟାଯିବା ଫଳରେ ଧ୍ୱଂସ ପାଉଛି । ପରିବର୍ତ୍ତିତ ପରିସ୍ଥିତି ସହିତ ଖାପଖୁଆଇ ଚଳିବା, ଅନ୍ୟତ୍ର ପଳାଇ ଯିବା କିମ୍ବା ଲୋପ ପାଇଯିବା ବ୍ୟତୀତ ବନ୍ୟଜନ୍ତୁମାନଙ୍କର ଅନ୍ୟ କୌଣସି ବିକଳ୍ପ ପନ୍ଥା ରହି ନାହିଁ । ଦେଶ ସାରା ବ୍ୟାପକ ଆବାସିକ କ୍ଷୟକ୍ଷତି ଘଟୁଥିବା ଯୋଗୁଁ ବହୁଜାତିର ପ୍ରାଣୀମାନଙ୍କର ସଂଖ୍ୟା ହ୍ରାସ ପାଇଗଲାଣି ଓ ସେମାନେ ବିରଳ ଓ ବିପଦ ଗ୍ରସ୍ତ ହୋଇ ରହିଛନ୍ତି । ଆମର ସମୃଦ୍ଧି ଓ ପ୍ରଗତି ଦୌଡ଼ରେ ଆମେ ପ୍ରକୃତରେ ସୂକ୍ଷ୍ମ ଭାରସାମ୍ୟ ନଷ୍ଟ କରି ଦେଉଛୁ ।

## ଶିକାର ଓ ଅବୈଧ ପଶୁ ବଧ

ଖାଦ୍ୟ, ଲୋମ, ଚର୍ମ, ଶିଙ୍ଗ, ହାତୀଦାନ୍ତ ଆଦି ଲୋଭରେ ଅନିୟନ୍ତ୍ରିତ ବନ୍ୟଜନ୍ତୁ ଶିକାର ବନ୍ୟ ପ୍ରାଣୀ ସଂରକ୍ଷଣ ଦିଗରେ ଘୋର ବିପଦ ସୃଷ୍ଟି କରିଛି । ଭାରତରେ ଚିତାବାଘ ସଂଖ୍ୟା ଶିକାର ଦ୍ୱାରା ଲୋପ ପାଉଯାଉଛି । ଅବୈଧ ଚମଡ଼ା ବ୍ୟବସାୟ ବହୁସଂଖ୍ୟକ ବାଘ, ହରିଣ, ଚିତା, ସାପ, ମାଛରଙ୍କା, କୁମ୍ଭୀର, ବିରାଡ଼ି ଓ ସୁନ୍ଦର ପରଯୁକ୍ତ ଚଢ଼େଇମାନଙ୍କର ଧ୍ୱଂସର କାରଣ ହୋଇଛି । ଦାନ୍ତ ଲାଗି ହାତୀ ଶିକାର କରାଗଲା । ଗଣ୍ଡା ଶିଙ୍ଗରେ ଲିଙ୍ଗ ଉତ୍ତେଜକ ଗୁଣ ଥିବାର ଅନ୍ଧବିଶ୍ୱାସ ଯୋଗୁଁ ସେମାନଙ୍କୁ ମାରି ଦିଆଗଲା । ଏଭଳି ଅବୈଧ ବ୍ୟବସାୟ ବନ୍ଦ କରିବା ଲାଗି ଆଇନ୍ ରହିଛି; ମାତ୍ର କେତେକ ଅବାଂଛିତ ବ୍ୟକ୍ତି, ଅସାଧୁ ବ୍ୟବସାୟୀ ଓ ରପ୍ତାନୀକାରୀ ଆମ ଦେଶରେ ଏହା ଲଂଘନ କରିଥାନ୍ତି । ଏଥି ସହିତ ବିଦେଶୀ ପଶୁ ପକ୍ଷୀ, ସରୀସୃପ ତଥା ବନ୍ୟ ପଶୁମାନଙ୍କୁ ଜୈବିକ ଚିକିତ୍ସା ସମ୍ପର୍କୀୟ ଗବେଷଣାରେ ବ୍ୟବହାର କରିବାର ଚଳଣି ଆହୁରି କ୍ଷତିର କାରଣ ହୋଇ ପଡ଼ିଛି ।

## ପ୍ରଦୂଷଣ

ବିଭିନ୍ନ ଶିଳ୍ପଗତ କାର୍ଯ୍ୟକଳାପ ଯୋଗୁଁ ବାୟୁ, ଜଳ ଓ ମୃତ୍ତିକାର ପ୍ରଦୂଷଣ କେବଳ ଆମରି ସ୍ୱାସ୍ଥ୍ୟ କାହିଁକି, ସମଗ୍ର ପ୍ରାଣୀ ଜଗତର ସ୍ୱାସ୍ଥ୍ୟ ସମୃଦ୍ଧି ଉପରେ କୁପ୍ରଭାବ ପକାଉଛି । କ୍ଷତିକାରକ ରାସାୟନିକ ଦ୍ରବ୍ୟମିଶ୍ରିତ ଶିଳ୍ପ-ତ୍ୟକ୍ତ ପଦାର୍ଥ ମାନ ନଦୀ, ହ୍ରଦ ଓ ମହାସାଗରକୁ ଛଡ଼ାଯିବା ଫଳରେ ଜଳଜ ପ୍ରାଣୀ ମାନଙ୍କ ଜୀବନ ବିପନ୍ନ ହେଉଅଛି । ଡ଼ି.ଡ଼ି.ଟି. ଓ ଡ଼ାୟେଲଡ୍ରିନ୍ ଭଳି କୀଟନାଶକ ଔଷଧ ବହୁ ଦରକାରୀ କୀଟପତଙ୍ଗଙ୍କୁ ନଷ୍ଟ କରିବା ସଙ୍ଗେସଙ୍ଗେ ବନ୍ୟ ପ୍ରାଣୀମାନଙ୍କ ପ୍ରତି ବିପଦ ସୃଷ୍ଟି କରିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ମଶା ନିରାକରଣ ଦିଗରେ ଡ଼ି.ଡ଼ି.ଟି.କୁ ଦକ୍ଷତାର ସହିତ ବ୍ୟବହାର କରାଗଲା । ସେହିଦିନରୁ ଏହା ଏକ ଦକ୍ଷ କୀଟନାଶକ ଔଷଧ ଭାବରେ କୃଷି କ୍ଷେତ୍ରରେ ଓ ସଞ୍ଚିତ ଜିନିଷ ଗୁଡ଼ିକ ଉପରେ ବ୍ୟବହୃତ ହୋଇ ଆସୁଛି । ଫଳରେ ଖାଦ୍ୟ ଜରିଆରେ ଉନ୍ନତ ପଶୁ ତଥା ମଣିଷ ମାନଙ୍କ ଦେହରେ ଏହା କ୍ରମାଗତ ଭାବେ ସଞ୍ଚିତ ହେବାରେ ଲାଗିଛି । ଏହାକୁ କୀଟନାଶକ ଔଷଧ ଓ ରାସାୟନୀକ ପ୍ରଦୂଷଣର ଜୀବ-ବର୍ଦ୍ଧକ ଗୁଣ (Biomagnification) ବୋଲି କୁହାଯାଏ । ଜଳୀୟ ପାରିବେଶିକ ବ୍ୟବସ୍ଥା (Aquatic Ecosystem) ରେ ମଧ ନଦୀ, ହ୍ରଦ ଓ ଅନ୍ୟ ଜଳାଶୟ ଗୁଡ଼ିକରେ ଛଡ଼ା ଯାଉଥିବା ଶିଳ୍ପ ପରିତ୍ୟକ୍ତ ଆବର୍ଜ୍ଜନାରେ ଥିବା ରାସାୟନିକ ଦ୍ରବ୍ୟ, ଯଥା-ପାରଦ, ସୀସା ଓ ଗିରଳ ଇତ୍ୟାଦି ଯେଉଁସବୁ ଭାରୀ ଖଣିଜ ପଦାର୍ଥ ଥାଏ, ସେଗୁଡ଼ିକ ଜଳଚର ପ୍ରାଣୀମାନଙ୍କ ଦେହରେ ସଞ୍ଚିତ ହୋଇ ରହେ । ଖାଦ୍ୟଶୃଙ୍ଖଳରେ ଥିବା ପ୍ରତ୍ୟେକ ପରବର୍ତ୍ତୀ ଖାଦକ ଦେହରେ ଏଭଳି ଭାରୀ ଖଣିଜଦ୍ରବ୍ୟଗୁଡ଼ିକ ଅଧିକ ମାତ୍ରାରେ ଜମିଯାଏ ।

ପକ୍ଷୀମାନଙ୍କ ଉପରେ ଡ଼ି.ଡ଼ି.ଟି.ର ଅଧିକ କୁପ୍ରଭାବ ପଡ଼େ । ବିଶେଷ କରି ସାମୁଦ୍ରିକ ପକ୍ଷୀମାନେ ଏହାଦ୍ୱାରା ବେଶୀ ପ୍ରଭାବିତ ହୁଅନ୍ତି । ଏହି ପକ୍ଷୀମାନଙ୍କର ଅଣ୍ଡା ଖୋଳପା ଗୁଡ଼ିକ ଏତେ ପତଳା ହୁଏ ଯେ ଅଣ୍ଡା ଉଷୁମାଉଥିବା ମାଈ ଚଢ଼େଇର ଓଜନ ଚାପରେ ଏହା ଫାଟିଯିବାର ସମ୍ଭାବନା ବଢ଼ିଯାଏ ।

ତୈଳବାହୀ ଜାହାଜ ଗୁଡ଼ିକରେ ଛିଦ୍ର ଥିଲେ କିମ୍ବା ଜାହାଜ କୌଣସି ଦୁର୍ଘଟଣା ଗ୍ରସ୍ତ ହେଲେ ସମୁଦ୍ର, ତୈଳ ପ୍ରଦୂଷଣ ଦ୍ୱାରା ଆକ୍ରାନ୍ତ ହୁଏ । ଫଳରେ ସାମୁଦ୍ରିକ ଜୀବମାନଙ୍କ ପ୍ରତି ଏହା ବିପଦ ସୃଷ୍ଟି କରିଥାଏ । ନିକଟ ଅତୀତରେ ଘଟି ଯାଇଥିବା ଉପସାଗରୀୟ ଯୁଦ୍ଧ ଯୋଗୁଁ ସମୁଦ୍ର ମଧ୍ୟକୁ ଅତ୍ୟଧିକ ପରିମାଣର ତୈଳ ନିର୍ଗତ ହୋଇ ତାର ଫଳ ବିଷମୟ ହେଲା । ଏହା ମନୁଷ୍ୟକୃତ କାର୍ଯ୍ୟ ଦ୍ୱାରା ପରିବେଶ ନଷ୍ଟ ହେବାର ଏକ ଦୃଷ୍ଟାନ୍ତ । ସାମୁଦ୍ରିକ ପକ୍ଷୀମାନେ ତୈଳ ସଂସ୍ପର୍ଶରେ ଆସିଲେ ସେମାନଙ୍କ ପର ରୁଦ୍ଧ ହୋଇଯାଏ । ତୈଳ ସେମାନଙ୍କ ପେଟକୁ ଗଲେ ଫଳ ବିଷମୟ ହୁଏ । ସବୁ ପ୍ରକାର ସାମୁଦ୍ରିକ ପ୍ରାଣୀଙ୍କର ତୈଳ ଦ୍ୱାରା ଶ୍ୱାସରୁଦ୍ଧ ହୋଇ ଅଶେଷ କ୍ଷତି ଘଟାଏ । ପ୍ଲାଙ୍କଟନ ପରି ସମସ୍ତ ଉଦ୍ଭିଦ ଓ ପ୍ରାଣୀମାନଙ୍କୁ ତୈଳ ଧ୍ୱଂସ କରିଦିଏ । ଏହି ଜୈବୀକ ପ୍ଲାଙ୍କଟନ୍

ମାନଙ୍କୁ ଖାଇ ମାଛମାନେ ମୃତ୍ୟୁମୁଖରେ ପଡ଼ନ୍ତି ।

ମନୁଷ୍ୟକୃତ ଅନେକ କାର୍ଯ୍ୟ ବନ୍ୟ ପ୍ରାଣୀ ସଂଖ୍ୟା ହ୍ରାସ ପାଇବାର କାରଣ ହୋଇ ପଡ଼ିଛି । ବିଭିନ୍ନ ପ୍ରକାରର ବିଦେଶୀ ଜୀବମାନଙ୍କୁ ଆମ ବାତାବରଣରେ ଛଡ଼ାଯିବା, ଅନୁଚିତ କୃଷିପଦ୍ଧତି, ଗୃହପାଳିତ ପଶୁମାନଙ୍କ ଦ୍ୱାରା ରୋଗ ସୃଷ୍ଟି, ନଦୀମାନଙ୍କରେ ବନ୍ଧବାନ୍ଧ ଦେଇ ଜଳଭଣ୍ଡାର ସୃଷ୍ଟି ଓ ଜଙ୍ଗଲ ନଷ୍ଟ ହେବା ଦ୍ୱାରା ବନ୍ୟା, ମରୁଡ଼ି ଆଦି କାରଣରୁ ପ୍ରାଣୀ ମାନଙ୍କ ପ୍ରତି ବିପଦ ସୃଷ୍ଟି ହୋଇଛି । ଏକ ନିର୍ଦ୍ଦିଷ୍ଟ ଜାତିର ପ୍ରାଣୀସଂଖ୍ୟା ଉଦ୍‌ବେଗଜନକ ସ୍ତରକୁ ହ୍ରାସ ପାଇଲେ ଅଥବା ଏହି ପ୍ରାଣୀର ବାସସ୍ଥଳୀ ଅଭାବ ଘଟିଲେ ତାହା ବିପନ୍ନ ହୋଇଛି ବୋଲି ବୁଝାଯାଏ ଓ ସୁରକ୍ଷା ଦିଗରେ ଆଶୁ ପଦକ୍ଷେପ ନନେଲେ ଏହି ପ୍ରାଣୀର ବିଲୁପ୍ତି ସୁନିଶ୍ଚିତ ହୋଇ ପଡ଼େ ।

## ତଥାପି ଆଶା ଅଛି

ବନ୍ୟପ୍ରାଣୀ ମାନଙ୍କ ସଂଖ୍ୟା କ୍ରମଶଃ ହ୍ରାସ ପାଇବା ସଙ୍ଗେସଙ୍ଗେ କେତେ ଜାତିର ପ୍ରାଣୀଙ୍କ ଅତି ସାମାନ୍ୟ ପରିମାଣ ସତ୍ତ୍ୱେ ଭାରତବର୍ଷରେ ସେମାନଙ୍କ ସୁରକ୍ଷାର ଏବେ ମଧ ପୂର୍ଣ୍ଣ ଆଶା ରହିଛି । ଏପରିକି, ଏହି ଧ୍ୱଂସର ଜୁଆରକୁ ମଧ ପୂରାପୂରି ପୂର୍ବାବସ୍ଥାକୁ ଘୂରାଇ ନିଆଯାଇପାରେ । ଏବେ ମଧ ଆମ ଦେଶ ତା'ର ଅଶେଷ କିସମର ପ୍ରାଣୀ ସମ୍ପଦରେ ପୃଥିବୀର ଶ୍ରେଷ୍ଠ ବିଭବଶାଳୀ ଦେଶ ଭାବରେ ଖ୍ୟାତି ଲାଭ କରିଛି । ଆଜିକାଲି ଦେଶର ବୃକ୍ଷଲତା ଓ ଜୀବଜନ୍ତୁ ମାନଙ୍କର ସୁରକ୍ଷା ଲାଗି ଏକନିଷ୍ଠ ଉଦ୍ୟମ ଲାଗି ରହିଛି । ଏସମ୍ପର୍କରେ ଅନ୍ୟଏକ ପରିଚ୍ଛେଦରେ ଆଲୋଚନା କରାଯାଇଛି ।

ସଂରକ୍ଷଣର ଅର୍ଥ ନୁହେଁ ଯେ, ମଣିଷର କ୍ଷତି ଘଟାଇ ବନ୍ୟପ୍ରାଣୀମାନଙ୍କୁ ନିରାପଦ ରଖିବା । ସଂରକ୍ଷଣ କହିଲେ ଏକ ଦୀର୍ଘସ୍ଥାୟୀ ପ୍ରାକୃତିକ ସୁରକ୍ଷାର ବ୍ୟବସ୍ଥା କିମ୍ବା ବିଜ୍ଞତାର ସହ ପ୍ରକୃତିର ବ୍ୟବହାରକୁ ବୁଝାଯାଏ । ପ୍ରକୃତି କୋଳରେ ସମସ୍ତ ପ୍ରାଣୀ ପ୍ରତିପାଳିତ ହୁଅନ୍ତି । ଆମର ସମସ୍ତ ଆବଶ୍ୟକତା ପାଇଁ ଆମେ ପ୍ରକୃତି ଉପରେ ହିଁ ନିର୍ଭର କରୁ । ମାତ୍ର ଆମେ ଏହି ବିଭବର ମାତ୍ରାଧିକ ବିନିଯୋଗ କରି ଚାଲିଲେ ଏହା ଚିରସ୍ଥାୟୀ ହୋଇ ପାରିବ ନାହିଁ । ଏହା କୁହାଯାଏ ଯେ, ଚାରିଗୋଟି ଖୁଣ୍ଟିକୁ ଆଶ୍ରୟ କରି ସଂରକ୍ଷଣର ଭିତ୍ତି ପ୍ରସ୍ତୁତ ହୋଇଛି । ପ୍ରଥମ ଖୁଣ୍ଟିଟି ନୈତିକତା ବା ଶାଳୀନତା ସମ୍ପର୍କୀୟ । ଆମ ପରମ୍ପରାଗତ ପ୍ରାକୃତିକ ସମ୍ପଦକୁ କ୍ଷୀଣକାୟ ବା ନିଃଶେଷ ନକରି ଭବିଷ୍ୟତ ବଂଶଧରମାନଙ୍କ ହାତକୁ ହସ୍ତାନ୍ତର କରିବା ହେଉଛି ଆମର ନୈତିକ ଦାୟିତ୍ୱ । ଦ୍ୱିତୀୟ ଖୁଣ୍ଟିଟି ହେଉଛି ରୁଚି ବା ସୌନ୍ଦର୍ଯ୍ୟ-ବିଷୟକ ବିଚାର । ପ୍ରକୃତି ହିଁ ଚିର ସୁନ୍ଦର । ପ୍ରକୃତିର ତୃପ୍ତିକର ସୌନ୍ଦର୍ଯ୍ୟ, ଯଥା-ନାନାଜାତିର ରଙ୍ଗବେରଙ୍ଗ ଫୁଲ, ବୃକ୍ଷଲତାମାନଙ୍କର ମନୋମୁଗ୍ଧକର ଶ୍ୟାମଳିମା, ପ୍ରଜାପତି ଓ ପକ୍ଷୀମାନଙ୍କ ଆକର୍ଷଣୀୟ ସୌନ୍ଦର୍ଯ୍ୟକୁ ଆମେ ସମସ୍ତେ ଉପଭୋଗ କରୁ । ସେମାନଙ୍କର ଯତ୍ନ ଓ ସୁରକ୍ଷା ହିଁ ଆମ ଜୀବନକୁ ସୁଖମୟ କରେ । ଆମ୍ଭମାନଙ୍କ ପରିପୁଷ୍ଟି ଲାଗି ଖାଦ୍ୟ ଓ ନିତ୍ୟ ବ୍ୟବହାର୍ଯ୍ୟ ବସ୍ତୁଗୁଡ଼ିକର ଉତ୍ପାଦନ ଲାଗି କଞ୍ଚାମାଲର ଆବଶ୍ୟକତା ହେଉଛି ତୃତୀୟ ଖୁଣ୍ଟି । ଏସବୁ ପ୍ରାକୃତିକ ବିଭବର ଯଦି ଆମେ ସୁରକ୍ଷା ନକରୁ କିମ୍ବା ଦକ୍ଷତାର ସହିତ

ଏସବୁର ବ୍ୟବହାର ନକରୁ ତାହେଲେ ଅତିଶୀଘ୍ର ଏଗୁଡ଼ିକ ନିଃଶେଷ ହୋଇଯାଇ ପାରେ । ଚତୁର୍ଥଟି ହେଉଛି ବୈଜ୍ଞାନିକ କ୍ଷତି । ଆମର ସମସ୍ତ ପ୍ରଯୁକ୍ତିଗତ ସଫଳତା ତଥା ବିଜ୍ଞାନର ଉନ୍ନତି ପ୍ରାକୃତିକ ସମ୍ପଦ ବିନା କେବେ ହେଲେ ସମ୍ଭବ ହୋଇପାରିନଥାନ୍ତା ।

ମାନବ କଲ୍ୟାଣ ଲାଗି ଏସବୁ ପ୍ରାକୃତିକ ବିଭବକୁ ବ୍ୟବହାର କରିବାର ଜ୍ଞାନର ପରୀକ୍ଷା ନିରୀକ୍ଷା ଓ ଏଗୁଡ଼ିକର ବ୍ୟବହାର ହିଁ ଆମର ସବୁ ବୈଜ୍ଞାନିକ ଉନ୍ନତିର ମୂଳଭିତ୍ତି । ପ୍ରାଣୀ ଓ ଉଦ୍ଭିଦମାନେ ମଧ୍ୟ ଆମର ବ୍ୟୁତ୍ପତ୍ତି ବା ସୃଷ୍ଟି ସଂସ୍ଥାନର ମୂଳ ଅଟନ୍ତି । ପ୍ରାକୃତିକ ବିଭବ ବିନା ପଶୁପାଳନ, ମତ୍ସ୍ୟଚାଷ, କୁକୁଡ଼ା ଚାଷ ଇତ୍ୟାଦିର ଉନ୍ନତି କେବେ ହେଲେ ସମ୍ଭବପର ହୋଇ ନଥାନ୍ତା । ଏଥିସହିତ ଉନ୍ନତ ଜାତିର ଜୀବସୃଷ୍ଟି, ପଶୁଖାଦ୍ୟର ପ୍ରୟୋଗ ଏବଂ ବୈଜ୍ଞାନିକ ଅଧ୍ୟୟନ ଯୋଗୁଁ ମାନବ ସମାଜର ଏଭଳି ଉନ୍ନତି ହୋଇ ପାରିଛି । ବିଭିନ୍ନ ଜାତିର ବନ୍ୟପ୍ରାଣୀ ଓ ବୃକ୍ଷଲତା ମାନଙ୍କର ସଂରକ୍ଷଣ ହିଁ ଏହି ଉନ୍ନତିର ଚାବିକାଠି ।

## ପ୍ରକୃତି ମାଆର କେହି ଅତି ପ୍ରିୟ ନୁହନ୍ତି

ଧୀରେ ଧୀରେ ବନ୍ୟପ୍ରାଣୀମାନେ ନିଶ୍ଚିହ୍ନ ହେଉଯିବାବେଳେ ଯଦି ଆମେ ନୀରବଦ୍ରଷ୍ଟା ହୋଇ ରହୁ, ତେବେ ସମସ୍ତ ବୈଜ୍ଞାନିକ ଓ ପ୍ରଯୁକ୍ତିଗତ ଅଗ୍ରଗତି ସତ୍ତ୍ୱେ ଜୀବନ ଆମର ବିପଦାପନ୍ନ ହୋଇ ପଡ଼ିବ ।

ଟାଇମ୍-ଲାଇଫ୍ ପୁସ୍ତକରେ "ଲୁପ୍ତ ପ୍ରାୟ ଜାତି" ଶୀର୍ଷକ ଏକ ଚିନ୍ତାଉଦ୍ଦୀପକ ମୁଖବନ୍ଧରେ ରୋମେନ୍ ଗ୍ରେ ଲେଖିଛନ୍ତି ଯେ, ପ୍ରକୃତି ଡାଫୋଡିଲ୍‌ସ ଫୁଲ ଅପେକ୍ଷା ଆମ ମଣିଷ ଜାତିକୁ ଅଧିକ ଭଲ ପାଉଥିବାର କୌଣସି ପ୍ରମାଣ ନାହିଁ । ଆମ ସମ୍ମୁଖରେ ଥିବା ହଜାର ହଜାର ଜୀବଜନ୍ତୁମାନଙ୍କ ପରି ଆମେ ଦିନେ ନା ଦିନେ ବିଲୁପ୍ତ ହୋଇଯିବା ସ୍ୱାଭାବିକ । ପ୍ରକୃତି ମାଆ ପାଖରେ କେହି ଅତି ପ୍ରିୟ ନୁହନ୍ତି । ଯେତେବେଳେ ପ୍ରାକୃତିକ ଭାରସାମ୍ୟ ପ୍ରତି ବିପଦ ଆସେ, ସେତେବେଳେ ପ୍ରକୃତି ଯେକୌଣସି ମୂଲ୍ୟ ଦେଇ ସ୍ଥିତାବସ୍ଥାକୁ ଫେରାଇ ଆଣିବା ଲାଗି ବାରମ୍ବାର ଚେଷ୍ଟା କରେ । ଯଦି ଆମ ଦ୍ୱାରା ଏଭଳି ବିପଦ ସୃଷ୍ଟି ହୁଏ ତାହେଲେ ପ୍ରକୃତି ସାପେ ସାପେ ବୁଲେଇ ପିଟିବାକୁ ଆରମ୍ଭ କରିଦେବ । ଏହି ପରିପ୍ରେକ୍ଷୀରେ ଡାଫୋଡିଲ୍ ଫୁଲ ପ୍ରତି ପ୍ରକୃତିର ଯେତିକି ଦରଦ; ମାଇକେଲ ଆଞ୍ଜେଲୋ, ସେକ୍ସପିୟର ବା ମୋଜାର୍ଟଙ୍କ ଭଳି ପ୍ରଖ୍ୟାତ କବି ବା ଲେଖକଙ୍କ ପ୍ରତି ଶ୍ରଦ୍ଧାଭାବ ତାଠାରୁ କୌଣସିମତେ ଅଧିକ ହେବ ନାହିଁ । ଆମେ ଏଠାରେ ଜୀବନ ବା ତା'ଠାରୁ ଏକ ପ୍ରକାଣ୍ଡ ଶକ୍ତି ସହିତ କାରବାର କରୁଛୁ, ଯାହା ବିଷୟରେ ଆମେ କିଛି ଜାଣୁ ନାହୁଁ କହିଲେ ଚଳେ । କେବଳ ଏତିକି ଆମେ ଜାଣୁ ଯେ ପ୍ରାଣୀ ମାନଙ୍କ ମଧ୍ୟରେ ପ୍ରକୃତିର ଅତି ପ୍ରିୟ ବୋଲି କେହି ନାହିଁ ।



## ଦୁଷ୍ପ୍ରାପ୍ୟ ବିପଦାପନ୍ନ ଜୀବଜନ୍ତୁ

ଯେଉଁ ପ୍ରାଣୀମାନଙ୍କ ସଂଖ୍ୟା ଉଦ୍‌ବେଗଜନକ ଭାବେ ହ୍ରାସ ପାଉଯାଉଛି ଓ ଯେଉଁମାନଙ୍କ ବାସସ୍ଥଳୀ ଅତିମାତ୍ରାରେ କମିଯାଉଛି ଏବଂ ସେମାନେ ନିଶ୍ଚିହ୍ନ ହୋଇ ଯିବାର ନିକଟବର୍ତ୍ତୀ ହୋଇଯାଉଛନ୍ତି, ସେହିମାନେ ହିଁ ବିପଦାପନ୍ନ ପଶୁ । ଆନ୍ତର୍ଜାତିକ ପ୍ରକୃତି ଓ ପ୍ରାକୃତିକ ସମ୍ପଦ ସଂରକ୍ଷଣ ସଂଘ ତରଫରୁ ପ୍ରକାଶିତ ଗୋଟିଏ ତଥ୍ୟ ପୁସ୍ତକରୁ ବିପଦଗ୍ରସ୍ତ ଭାବରେ ପରିଚିତ ବିଭିନ୍ନ ଜନ୍ତୁଙ୍କ ବିଷୟରେ ତଥ୍ୟ ମିଳେ । 1972 ମସିହାରେ ପ୍ରଣୀତ ଭାରତରେ ଲିପିବଦ୍ଧ ହୋଇଥିବା ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍‌ରେ ଭାରତୀୟ ଜୀବଜନ୍ତୁ ମାନଙ୍କୁ ସେମାନଙ୍କ ସଂରକ୍ଷଣ ସ୍ଥିତି ଉପରେ ଭିତ୍ତି କରି ଚାରୋଟି ତଫସିଲ୍‌ରେ ତାଲିକାଭୁକ୍ତ କରାଯାଇଛି । ପ୍ରଥମ ତଫସିଲରେ ଦୁଷ୍ପ୍ରାପ୍ୟ ଓ କ୍ୱଚିତ୍ ଦୃଷ୍ଟ ଲୁପ୍ତପ୍ରାୟ ବିପନ୍ନ ପ୍ରାଣୀମାନଙ୍କ ତାଲିକା ଅଛି, ଯେଉଁ ମାନଙ୍କ ଲାଗି ଆଇନଗତ ସୁରକ୍ଷାର ବ୍ୟବସ୍ଥା କରାଯାଇଛି । ପ୍ରାଣୀମାନଙ୍କର ପ୍ରାକୃତିକ ସ୍ଥିତି ଅନୁଯାୟୀ ଏହି ତଫସିଲ୍ ଥରକୁ ଥର ସଂଶୋଧନ କରାଯାଉଛି । 381 ଜାତିର ପକ୍ଷୀ ଓ 187 ଜାତିର ସରୀସୃପ ଶ୍ରେଣୀର ପ୍ରାଣୀଙ୍କର ସ୍ଥିତି ବିପଦାପନ୍ନ ବୋଲି ଅଟକଳ କରାଯାଇଛି । ସଂରକ୍ଷଣ ପ୍ରଚେଷ୍ଟା ଦ୍ୱାରା ବାଘ, ଗଣ୍ଡା, କୁମ୍ଭୀର ଆଦି ପ୍ରାଣୀଙ୍କର ପୂର୍ବ ସ୍ଥିତି ଫେରି ଆସିଛି । ଜେର୍ଡନ କୋର୍ସର (Jerdon's Courser) ପରି ଏକ ଦୁଷ୍ପ୍ରାପ୍ୟ ପକ୍ଷୀ ଏବେ ପୁନରାୟ ଦେଖିବାକୁ ମିଳିଲାଣି । ଏହି ପକ୍ଷୀ ଲୋପ ପାଇ ଯାଇଛି ବୋଲି ବିଶ୍ୱାସ କରାଯାଉଥିଲା । ମାତ୍ର, ଏହା ସୀମିତ ଅଞ୍ଚଳରେ ଅଳ୍ପ ସଂଖ୍ୟାରେ ବଞ୍ଚି ରହିଥିବାର ଦେଖାଗଲାଣି ।

ଦୁଷ୍ପ୍ରାପ୍ୟ ପ୍ରାଣୀ ମାନଙ୍କର ସୁରକ୍ଷା କ୍ଷେତ୍ରରେ ସଂରକ୍ଷଣ କୌଶଳ ପ୍ରତି ଜନସଚେତନତା ସୃଷ୍ଟି କରିବା ପାଇଁ ବିପନ୍ନ ପ୍ରାଣୀମାନଙ୍କର ଚଳଣି ଓ ବାସ ସ୍ଥଳୀ ଉପରେ ଜ୍ଞାନ ଥିବା ଆବଶ୍ୟକ । ଏହି ଅଧ୍ୟାୟରେ ଭାରତବର୍ଷର କେତେକ ଦୁଷ୍ପ୍ରାପ୍ୟ/ଆତଙ୍କିତ/ବିପନ୍ନ ପଶୁଙ୍କ ବିଷୟରେ ସୂଚନା ଦିଆଯାଇଛି ।

## ସ୍ତନ୍ୟପାୟୀ ପ୍ରାଣୀ(Mammals)

ପଶୁମାନଙ୍କୁ ସାଧାରଣତଃ ଦୁଇଟି ଭାଗରେ ବିଭକ୍ତ କରାଯାଏ । ଯଥା-ମେରୁଦଣ୍ଡୀ, ଯେଉଁମାନଙ୍କର ମେରୁଦଣ୍ଡ ହାଡ ଅଛି ଓ ଅମେରୁଦଣ୍ଡୀ-ଯେଉଁମାନଙ୍କର ମେରୁହାଡ଼ ନାହିଁ । ମାଛ, ବେଙ୍ଗ ଜାତୀୟ ଉଭୟଚର ପ୍ରାଣୀ, ସରୀସୃପ, ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନେ ମେରୁଦଣ୍ଡୀ ଶ୍ରେଣୀର । କୀଟ ପତଙ୍ଗ, ପୋକ, ଜେଣ୍ଡା, ଅଷ୍ଟପଦୀ, ନକ୍ଷତ୍ର ମାଛ ଭଳି ପ୍ରାଣୀ, ଯେଉଁମାନଙ୍କର ମେରୁହାଡ ନାହିଁ, ସେମାନଙ୍କୁ ଅମେରୁଦଣ୍ଡୀ ପ୍ରାଣୀ କହନ୍ତି ।

ପ୍ରାୟ 48କୋଟି ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ଦେଖାଦେଇଥିବା ମେରୁଦଣ୍ଡୀ ପ୍ରାଣୀମାନେ ହେଉଛନ୍ତି ଆଜିର ସବୁଠାରୁ ଉନ୍ନତ ପ୍ରାଣୀ । ସେମାନଙ୍କ ମଧ୍ୟରୁ ସ୍ତନ୍ୟପାୟୀ ପ୍ରାଣୀମାନେ ହିଁ ଅତିମାତ୍ରାରେ ବିକାଶ ଲାଭ କରିଛନ୍ତି । କୋଡିଏ କୋଟି ବର୍ଷ ପୂର୍ବେ ଏହି ସ୍ତନ୍ୟପାୟୀ ପ୍ରାଣୀଙ୍କର ସୃଷ୍ଟି ହୋଇଥିଲା । ଅନ୍ୟ ଜୀବମାନଙ୍କ ଠାରୁ ସ୍ତନ୍ୟପାୟୀ ଜୀବମାନଙ୍କର ଶାରୀରିକ ଗଠନ କ୍ଷେତ୍ରରେ ଦୁଇଟି ମୁଖ୍ୟ ବୈଶିଷ୍ଟ୍ୟ ରହିଛି । ତାହା ହେଲା ସେମାନଙ୍କର ଦେହସାରା ଲୋମ ବା କେଶ ଓ ଛୁଆଙ୍କୁ ଖୁଆଇବା ପାଇଁ ଦୁଗ୍ଧଗ୍ରନ୍ଥି ବା ସ୍ତନର ଉପସ୍ଥିତି । ଉନ୍ନତ ଭାବରେ ବିକଶିତ ସେମାନଙ୍କର ସ୍ନାୟୁ ବିନ୍ୟାସ ଓ ଯେକୌଣସି ପରିସ୍ଥିତି ସହିତ ଖାପଖୁଆଇ ଚଳିବା ଶକ୍ତି ଯୋଗୁ ହିଁ ପୃଥିବୀରେ ଜୀବନ ଧାରଣର ଅନୁକୂଳ ସବୁପ୍ରକାର ବାତାବରଣରେ ସ୍ତନ୍ୟପାୟୀ ପ୍ରାଣୀମାନେ ବାସ କରିବା ଦେଖାଯାଏ । 21700ଜାତିର ମାଛ, ଆଠଲକ୍ଷ ଜାତିର କୀଟପତଙ୍ଗ ଓ 8600ଜାତିର ପକ୍ଷୀ ତୁଳନାରେ ସେତେ ଅଧିକ ନହେଲେ ମଧ୍ୟ ମଣିଷକୁ ମିଶାଇ 4000ବିଭିନ୍ନ ଜାତିର ସ୍ତନ୍ୟପାୟୀ ପ୍ରାଣୀମାନେ ହିଁ ପଶୁଜଗତର ସର୍ବାଧିକ ସଫଳକାମ ଜୀବ । ଆକୃତି, ପ୍ରକୃତି, ଶାରୀରିକ ଗଠନ ତଥା ସ୍ୱଭାବ ଭେଦରେ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଅନେକ ତାରତମ୍ୟ ଅଛି । ଏମାନଙ୍କ ଆକୃତିର ପାର୍ଥକ୍ୟ ପରିସର ଏତେ ଅଧିକ ଯେ, ତହିଁରେ ଅଳ୍ପଦିନ ହେଲା ଆବିଷ୍କୃତ ଘୁଷୁରୀ ନାକ ପରି ମୁହଁଥିବା କିଟିସ୍, ଦେଢଗ୍ରାମ୍ ଓଜନର ଚେମେଣିଠାରୁ ଆରମ୍ଭ କରି ଶହେଟନ୍‌ରୁ ଅଧିକ ଓଜନର ତିମି ମାଛ ପର୍ଯ୍ୟନ୍ତ ନାନା ଆକୃତିର ପ୍ରାଣୀ ଦେଖିବାକୁ ମିଳନ୍ତି । ଅନ୍ୟ ଯେକୌଣସି ଦଳର ପଶୁ ଅପେକ୍ଷା ମଣିଷ ଦ୍ୱାରା ସ୍ତନ୍ୟପାୟୀ ପ୍ରାଣୀମାନେ ଅଧିକ ପ୍ରଭାବିତ ହୋଇଛନ୍ତି । ଅସଂଖ୍ୟ ପଶୁଙ୍କୁ ଆମେ ଖାଦ୍ୟ ଓ ବସ୍ତ୍ର, ଭାରବହନ ତଥା ପୋଷା ଜନ୍ତୁ ଭାବରେ ଗୃହପାଳିତ କରି ରଖିଛୁ । ପ୍ରତିବର୍ଷ ପ୍ରାଣୀଚିକିତ୍ସା ସମ୍ବନ୍ଧୀୟ ଗବେଷଣାରେ ଆମେ ଲକ୍ଷଲକ୍ଷ ସ୍ତନ୍ୟପାୟୀ ପ୍ରାଣୀଙ୍କୁ ବ୍ୟବହାର କରୁଛୁ । ଅନେକ ସ୍ତନ୍ୟପାୟୀ ପ୍ରାଣୀଙ୍କର ବାସସ୍ଥଳୀ ଧ୍ୱଂସ କରି ସେମାନଙ୍କୁ ଦୁଷ୍ପ୍ରାପ୍ୟ ଓ ବିପନ୍ନ କରିବାରେ ଆମେ ହିଁ ଦାୟୀ ।

### ମାଙ୍କଡ଼ ଜାତୀୟ ପ୍ରାଣୀ (PRIMATES)

ଲାଙ୍ଗୁଡ଼ହୀନ ମାଙ୍କଡ଼ (ଗରିଲା) ଓ ମଣିଷ ମାନେ ହେଉଛନ୍ତି ପ୍ରାଇମେଟ (Primates) ବା ଏହି

ଜାତିର ଜୀବ । ପ୍ରକୃତିବିତ୍ କାର୍ଲ ଲିନେଅସ୍ (1707-78) ଉଚ୍ଚତମ ଶ୍ରେଣୀର ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ପ୍ରଥମ କରି ମାଙ୍କଡ଼ ଜାତୀୟ ପ୍ରାଣୀ ବା ପ୍ରାଇମେଟ୍ ନାମରେ ଅଭିହିତ କରିଥିଲେ । କାରଣ, ସେ ଦର୍ଶାଇବାକୁ ଚାହିଁଥିଲେ ଯେ ଏହି ପଶୁମାନେ ହେଉଛନ୍ତି ପ୍ରଥମ ପଶୁ ଯେଉଁମାନେକି ଅନ୍ୟ ପଶୁମାନଙ୍କ ଠାରୁ ଉତ୍କୃଷ୍ଟ । କେବଳ ଦେହର ଗଠନ ଯୋଗୁଁ ଏ ଶ୍ରେଣୀର ପ୍ରାଣୀମାନେ ଅନ୍ୟ ପଶୁମାନଙ୍କ ଠାରୁ ଉତ୍କୃଷ୍ଟ ବିବେଚିତ ହୁଅନ୍ତି ନାହିଁ । କୀଟପତଙ୍ଗମାନଙ୍କ ପରି ଅନେକ ନିମ୍ନସ୍ତରର ଜୀବ ଅଛନ୍ତି, ଯେଉଁମାନେକି ବୋଧହୁଏ ବିଭିନ୍ନ ବାସସ୍ଥଳୀକୁ ଅନ୍ୟ ଜୀବମାନଙ୍କ ଅପେକ୍ଷା ଭଲ ଭାବରେ ଖାପ ଖୁଆଇ ପାରନ୍ତି । ଉନ୍ନତ ମସ୍ତିଷ୍କର ବିକାଶ ସହିତ ଅଧିକ ବୁଦ୍ଧିମତ୍ତା ହିଁ ଏଭଳି (ପ୍ରାଇମେଟ ଜାତିର) ପ୍ରାଣୀମାନଙ୍କର ବୈଶିଷ୍ଟ୍ୟ । ଯେତେଦୂର ଜଣାଯାଏ, ସାତ କୋଟି ବର୍ଷ ପୂର୍ବେ ଗଛରେ ବାସ କରୁଥିବା ଛୋଟ ପଶୁଙ୍କୁ ପ୍ରଥମ କରି ପ୍ରାଇମେଟ ବା ମାଙ୍କଡ଼ ଜାତୀୟ ପ୍ରାଣୀ ଆଖ୍ୟା ଦିଆଗଲା । ଏବେ ଦେଖାଯାଉଥିବା ବୃକ୍ଷାଶ୍ରୟୀ ଶ୍ରିୟୁ (Modern Tree Shrews) ସଦୃଶ କୀଟପତଙ୍ଗ ଖାଉଥିବା ଆଦିମ ସ୍ତନ୍ୟପାୟୀ ପ୍ରାଣୀମାନଙ୍କଠାରୁ ସେମାନେ (ପ୍ରାଇମେଟ୍ ମାନେ) ବିକଶିତ ଥିଲେ । ସେମାନଙ୍କର ସାରା ବିବର୍ତ୍ତନ କାଳ ମଧ୍ୟରେ ଅଧିକାଂଶ ପ୍ରାଇମେଟ ବୃକ୍ଷରେ ହିଁ ବାସ କରୁଥିଲେ । କେବଳ କେତେକ ଗରିଲା ଜାତୀୟ ପ୍ରାଣୀ ଓ ମଣିଷ ଏପ୍ରକାର ଜୀବନ ଯାପନ ପ୍ରଣାଳୀରୁ ଅଲଗା ହୋଇ ଯାଇଥିଲେ ।

ଅନ୍ୟ ସବୁ ପ୍ରାଣୀ ମାନଙ୍କ ଅପେକ୍ଷା ପ୍ରାଇମେଟଙ୍କର ମସ୍ତିଷ୍କ ଥିଲା ଯଥେଷ୍ଟ ଉନ୍ନତ । ଆଦିମ ପ୍ରାଇମେଟମାନଙ୍କ ବୃକ୍ଷାଶ୍ରୟୀ ବାସସ୍ଥଳୀମାନଙ୍କରେ, ସେମାନଙ୍କର ହାତରେ ଭିଡିଧରିବା ସାମର୍ଥ୍ୟ, ମାଂସପେଶୀ ଗୁଡ଼ିକର ସମନ୍ୱୟ, ଆଶୁ ପ୍ରତିକ୍ରିୟା, ଅନୁସନ୍ଧାନୀ କର୍ମନିଷ୍ଠା ଆଦି ଆଚରଣ ସେମାନଙ୍କୁ ଜୀବନ ସଂଗ୍ରାମରେ ଯଥେଷ୍ଟ ସାହାଯ୍ୟ କରିଥିଲା । ଅନ୍ୟ ପ୍ରତିଯୋଗୀ ପ୍ରାଣୀ ମାନଙ୍କ ତୁଳନାରେ ପ୍ରାଇମେଟ୍ ମାନେ ଦୁର୍ବଳ ହେଲେ ମଧ୍ୟ ତାଙ୍କଠାରୁ ଥିଲେ ଅଧିକ କ୍ଷିପ୍ର ଓ ଚତୁର ।

ପ୍ରାଇମେଟ୍ ଶ୍ରେଣୀର ପ୍ରାଣୀମାନେ ଦୁଇ ପ୍ରକାର ମୁଖ୍ୟ ଉପବିନ୍ୟାସରେ ବିଭକ୍ତ । ତନ୍ମଧ୍ୟରୁ ମଣିଷ, ଗରିଲା ଓ ମାଙ୍କଡ଼ମାନେ ଗୋଟିଏ ବିନ୍ୟାସରେ ଏବଂ ଅନ୍ୟଭାଗରେ ଅନ୍ତର୍ଭୁକ୍ତ ଲେମୁର୍ ଓ ସେମାନଙ୍କ ସମର୍ଗୀୟ ମାନେ । ଭାରତୀୟ ବଣମଣିଷ (Hoolock Gibbon) ହେଉଛି ଏ ଦେଶରେ ଦେଖାଯାଉଥିବା ଏକମାତ୍ର ଗରିଲା ଜାତୀୟ ପ୍ରାଣୀ ।

ନାନା ପ୍ରକାର ମାଙ୍କଡ଼ ଓ ହନୁମାଙ୍କଡ଼ମାନଙ୍କୁ ନେଇ ଭାରତୀୟ ମର୍କଟ ପରିବାର ଗଠିତ । ଲେମୁର ଜାତୀୟ ପ୍ରାଣୀ ମଧ୍ୟରେ କେବଳ ଲଜ୍ଜ୍ୟାବତୀ ମାଙ୍କଡ଼ (Lorises), ଏଦେଶରେ ଦେଖାଯାଏ । ପରବର୍ତ୍ତୀ ପୃଷ୍ଠା ମାନଙ୍କରେ ଭାରତରେ ଥିବା ବିପନ୍ନ ମର୍କଟ ଜାତୀୟ ପ୍ରାଣୀମାନଙ୍କ ବିଷୟରେ ସଂକ୍ଷିପ୍ତ ବିବରଣୀ ଦିଆଯାଇଛି ।

**ସିଂହଲାଞ୍ଜିଆ ମାଙ୍କଡ଼:**

*Macaca Silenus* (Linnaeus)

ମର୍କଟ ଜାତୀୟ ପ୍ରାଣୀ ମାନଙ୍କ ଭିତରେ ସିଂହ ଲାଞ୍ଜିଆ (Lion-tailed Macaque) ମାଙ୍କଡ଼ର ସ୍ଥିତି ସବୁଠାରୁ ବିପନ୍ନ ହୋଇଥିବାର ଜଣାଯାଏ । କେରଳର ନୀରବ ଉପତ୍ୟକା ରେ ଜଳବିଦ୍ୟୁତ୍ ଯୋଜନା ବିଷୟରେ ମତାନ୍ତର ଘଟି ଯେତେବେଳେ ଦେଶସାରା ଚହଳ ସୃଷ୍ଟି ହୋଇଥାଏ, ସେତିକିବେଳେ ଏ ଜାତିର ମାଙ୍କଡ଼ ଲୋକ ଲୋଚନକୁ ଆସିଲେ । ଯାହାହେଉ ସେଠାରେ ଏ ଯୋଜନା ବନ୍ଦ କରାଯିବା ହେଉଛି ଦେଶରେ ବନ୍ୟପ୍ରାଣୀ ସଂରକ୍ଷଣ ଆନ୍ଦୋଳନର ଏକ ବିଜୟ ବାର୍ତ୍ତା । ଏବେ ସିଂହଲାଞ୍ଜିଆ ମାଙ୍କଡ଼ମାନଙ୍କ ବଂଶରକ୍ଷାର ଆଶା ଅଛି ।

କଳା କଳା ବାଳ ସାଙ୍ଗକୁ ଭଲଭାବରେ ବଢ଼ିଥିବା ବାଦାମୀ ଧଳା ରଙ୍ଗର କେଶର, ଲାଙ୍ଗୁଡ଼ ଆଗରେ ସିଂହ ଲାଞ୍ଜ ଭଳି ପୁଞ୍ଜାଏ କେଶ (ଯେଉଁଥିପାଇଁ ଏହାର ଏ ଲୋକପ୍ରିୟ ନାମକରଣ) ଯୋଗୁଁ ସିଂହଲାଞ୍ଜିଆ ମାଙ୍କଡ଼ର ଚେହେରା ଠିକ୍ ଆଫ୍ରିକୀୟ ମାଙ୍କଡ଼ ବାବୁନ୍ ପରି ଦେଖାଯାଏ । ଗ୍ରୀଷ୍ମମଣ୍ଡଳୀୟ ଚିରହରିତ ଘଞ୍ଚ ଜଙ୍ଗଲରେ ପତ୍ର କଢ଼ି ଓ ଫଳ ଖାଇ ଏ ଜାତିର ମାଙ୍କଡ଼ମାନେ ବାସ କରନ୍ତି । ପଶ୍ଚିମଘାଟ ପର୍ବତମାଳାରେ ଏମାନଙ୍କର ଚରାଭୂଇଁ -ନୀଳଗିରି, ଆନାମଲାଇ, କାର୍ଡ଼ାମମ୍ ପର୍ବତମାଳା, ନୀରବ ଉପତ୍ୟକା ଓ ପେରିୟାର ଅଭୟାରଣ୍ୟ ମଧ୍ୟରେ ସୀମିତ ।

ଏ ଜାତିର ମାଙ୍କଡ଼ମାନେ ପ୍ରବଳ କଷ୍ଟ ସହ୍ୟ କରି ଗ୍ରୀଷ୍ମମଣ୍ଡଳୀୟ ଜଙ୍ଗଲମାନଙ୍କରେ ବଞ୍ଚିରହିଛନ୍ତି । ଛୋଟିଆ ଓ ଶକ୍ତ ଜଂଘ, ଗୋଳିଆ ହୋଇ ଗୋଲ୍ ଥୋମଣି ଏବଂ ମୋଟା ଭଙ୍ଗ ଆଖିପତା ବିଶିଷ୍ଟ ଏହା ଏକ ମଧ୍ୟମ ଆକୃତିର ଶକ୍ତ ପଶୁ । ଏହାର ଗାଲରେ ଥିବା ବଡ଼ ଥଳି ଦୁଇଟିରେ ଖାଦ୍ୟ ସାଇତି ରଖିଥାଏ, ବିଶ୍ରାମ ବେଳେ ତାହା ଚୋବାଇ ଖାଇବାରେ ସାହାଯ୍ୟ କରେ ।

**ସୁବର୍ଣ୍ଣ ହନୁମାଙ୍କଡ଼**

*Presbytis geei* (Khagiuria)

ଖୁବ୍ ଲମ୍ବା ଲାଞ୍ଜ ଓ ରହଳିଆ ସୁନେଲି ମିଶା ଈଷତ୍ ଉଜ୍ଜ୍ୱଳ ହଳଦି ରଙ୍ଗର ଲୋମଯୁକ୍ତ ଦେହ ଓ କଳାମୁହଁ ହେଉଛି ସୁବର୍ଣ୍ଣ ହନୁମାଙ୍କଡ଼ର ଲକ୍ଷଣ । ଭାରତ ଓ ଭୁଟାନ୍ ମଧ୍ୟରେ ପ୍ରବାହିତ ସଂକୋଶ ଓ ମାନସ ନଦୀ ମଧ୍ୟବର୍ତ୍ତୀ ଦୁଇ ଦେଶର ସୀମାରେ ଥିବା ହିମାଳୟ ପାଦଦେଶସ୍ଥ ଆସାମ-ଭୁଟାନ ସୀମା ଅଞ୍ଚଳରେ ଏମାନେ ବସବାସ କରନ୍ତି । ବଡ଼ ବଡ଼ ଗଛର ଉଚ୍ଚ ଶାଖାମାନଙ୍କରେ ଏମାନେ ରହିବାକୁ ଭଲ ପାଆନ୍ତି । ଡାଳରୁ ଡାଳକୁ ଡେଇଁଲା ବେଳେ ଏହି ମାଙ୍କଡ଼ର ବଡ଼ ଲାଞ୍ଜ ଭାରସାମ୍ୟ ରକ୍ଷା କରିବାରେ ସାହାଯ୍ୟ କରେ ।

## ନୀଳଗିରି ହନୁ

*Presbytis golmi* (Fischer)

ନୀଳଗିରି ହନୁର ଦେହ ଦେଖିବାକୁ ଚିକ୍କଣ କଳା ରଙ୍ଗର । ମୁଣ୍ଡର ଆକୃତି ସାଧାରଣ ହନୁମାଙ୍କଡ଼ ସାଙ୍ଗେ ସମାନ ଓ ତହିଁରେ ହଳଦି ମିଶା ବାଦାମୀ ରଙ୍ଗର ରୁମ ଭରି ରହିଥାଏ । ଏହାର ଲାଞ୍ଜ ମଧ ଖୁବ୍ ଲମ୍ବା । ନାମ ଅନୁସାରେ ଏମାନେ ପଶ୍ଚିମଘାଟର ନୀଳଗିରି ପର୍ବତମାଳାରେ ଦେଖାଯାଆନ୍ତି । ଏମାନଙ୍କ ବାସସ୍ଥଳୀର ପରିସର କର୍ଣ୍ଣାଟକର କୁର୍ଗ, ତାମିଲନାଡୁର ପାଲାନି ପର୍ବତ ଯାଏଁ ବିସ୍ତୃତ । ଗୋଟିଏ ଦଳରେ ସାଧାରଣତଃ ପାଞ୍ଚରୁ ଷୋହଳ ପର୍ଯ୍ୟନ୍ତ ମାଙ୍କଡ଼ ରହନ୍ତି । ଗଛର ପତ୍ର, ଫଳ ଓ ପତ୍ରଗଛା ଆଦି ଏମାନଙ୍କର ପ୍ରଧାନ ଖାଦ୍ୟ । ଏ ଜନ୍ତୁମାନେ ଅନେକ ସମୟରେ କୃଷିକ୍ଷେତ୍ର ମାନଙ୍କରେ ପଶି ଫସଲ ନଷ୍ଟ କରିବା ଦେଖାଯାଏ ।



"ଶୋଲ ଜଙ୍ଗଲ" (SHOLA FORESTS) ଧ୍ୱଂସ ହୋଇଯିବା ପରେ ଓ ଆହୁରି ଅନେକ ମାନବକୃତ କାର୍ଯ୍ୟ ଯୋଗୁଁ ଏବେ ନୀଳଗିରି ହନୁଙ୍କର ସଂଖ୍ୟା ଅନେକ ହ୍ରାସ ପାଇଯାଇଛି । ଏମାନଙ୍କର ରୁମ ଓ ମାଂସର ଉତ୍ତେଜକ ଗୁଣ ଯୋଗୁଁ ଏମାନଙ୍କୁ ଶିକାର କରି ମାରି ଦିଆଯାଉଛି ।

## ଛୋଟ ଲଜ୍ୟାବତୀ ମାଙ୍କଡ଼

*Loris tardigradus* (Linnaeus)

ଏହା ଏକ ଛୋଟ ସୁନ୍ଦର ମର୍କଟ ଜାତୀୟ ପ୍ରାଣୀ । ବଡ଼ ଆଖି, ଲମ୍ବ ଗୋଡ଼, ବଡ଼ବଡ଼ କାନ, ବେଣ୍ଡ ଉନ୍ନତ ତର୍ଜନୀ (ବିଣ୍ଡି ଆଙ୍ଗୁଠି) ଓ ଲାଞ୍ଜହୀନତା ଏହାର ବୈଚିତ୍ର୍ୟ । ଦେହ ସାରା ଗାଢ଼ ଧୂସର ରଙ୍ଗର ରୁମ ଭିତରେ ରୁପେଲି ରୁମ ଗୁଡ଼ାକ ବିଛାଡି ହୋଇ ରହିଥାଏ । ଛୋଟ ଲଜ୍ୟାବତୀ ମାଙ୍କଡ଼ ହେଉଛି ଏକ ନିଶାଚର ପ୍ରାଣୀ, ଯିଏକି ରାତିସାରା ଗଛ ଓ ବୁଦା ଭିତରେ ବୁଲି ବୁଲି କୋଳି,



କୀଟପତଙ୍ଗ, ଡ଼ିଆଁବେଙ୍ଗ, ଝିଟିପିଟି ଓ ସାନସାନ ଚଢ଼େଇ ସବୁ ଖାଏ ଓ ଦିନସାରା ବିଶ୍ରାମ ନିଏ । ଗଛର ଡାଳକୁ ଦୁଇ ହାତରେ ଧରି ମୁଣ୍ଡଟାକୁ ଦୁଇ ଗୋଡ ସନ୍ଧିରେ ଭରି ଦେଇ ଦେହକୁ ଗୁଡ଼େଇ ପେଣ୍ଡୁଟିଏ ପରି (ଝୁଲିପଡ଼ି) ସେ ଶୋଇଯାଏ । ଏହି ବିଚିତ୍ର ମର୍କଟ କେରଳ, ତାମିଲନାଡୁ, କର୍ଣ୍ଣାଟକ ଓ ଆନ୍ଧ୍ରପ୍ରଦେଶର ଜଙ୍ଗଲମାନଙ୍କରେ ଦେଖିବାକୁ ମିଳେ । ଚକ୍ଷୁ ରୋଗ ଔଷଧରେ ବ୍ୟବହାର କରିବା ପାଇଁ ଏହାର ଶିକାର ଓ ଗବେଷଣା ଅନୁଷ୍ଠାନ ମାନଙ୍କରେ ପରୀକ୍ଷାମୂଳକ ବ୍ୟବହାର ଲାଗି ଏମାନଙ୍କୁ ଫାଶ ପକାଇ ଧରାଯାଏ । ତେଣୁ ଏମାନଙ୍କ ସଂଖ୍ୟା ଅତ୍ୟଧିକ ଭାବରେ କମିଗଲାଣି ।



**ଲଜ୍ୟାବତୀ ମାଙ୍କଡ଼**

*Nycticebus coucang* (Boddaert)

ଲଜ୍ୟାବତୀ ମାଙ୍କଡ଼ଟି ଖାଇପିଇ ଡଉଲ ଡାଉଲ ଦିଶୁଥିବା ପଶୁଟିଏ । ଏହାର ଦେହ ବେଶ୍ ଶକ୍ତ ଓ ନିଦା ହୋଇ ଗଠିତ । ମୁଣ୍ଡଟି ଗୋଲ ଓ ଆଖି ଦୁଇଟି ମଧ୍ୟ ଗୋଲାକାର । ଆଖିର ଚତୁଃପାର୍ଶ୍ୱରେ କଳାମିଶା ବାଦାମୀ ରଙ୍ଗର ବଳୟ ଅଛି । ଏହାର ଲାଞ୍ଜ ନଥାଇ ଲାଞ୍ଜର ଅବଶେଷ ମାତ୍ର ଅଛି । ଦେହସାରା ବହଳିଆ ଧୂସର ରଙ୍ଗର ନରମ ଲୁମ ଥାଏ । ପିଠି ମଝିରେ ଧୂସର ମିଶା ବାଦାମୀ ଲୁମ ଉପରେ ବାଦାମୀ ରଙ୍ଗର ଗାରଟିଏ ଉପରୁ ତଳ ପର୍ଯ୍ୟନ୍ତ ଲମ୍ବିଥାଏ । ଅତି ଉନ୍ନତ ହାତ ଓ ଗୋଡ଼ର ବୁଢ଼ା ଆଙ୍ଗୁଠି ଗଛର ଡାଳ

ଧରି ଏପଟସେପଟ ହେବା ପାଇଁ ଏହି ପଶୁକୁ ଖୁବ୍ ସାହାଯ୍ୟ କରିଥାଏ । ଛୋଟ ଲଜ୍ୟାବତୀ ମାଙ୍କଡ଼ପରି ଏ ଜାତିର ମାଙ୍କଡ଼ମାନେ ମଧ ନିଶାଚର । ଗଛର ପତ୍ର, ଫଳ ଓ ପତ୍ରଗଛା ଏବଂ କୀଟ ପତଙ୍ଗ ଏମାନଙ୍କର ଆହାର । ଆସାମକୁ ମିଶାଇ ଭାରତରେ ପୂର୍ବାଞ୍ଚଳର ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟ ମାନଙ୍କରେ ଲଜ୍ୟାବତୀ ମାଙ୍କଡ଼ମାନେ ଦେଖା ଯାଆନ୍ତି ।

## ଭାରତୀୟ ବଣମଣିଷ

*Hylobats hoolock* (Harlan)

ଭାରତୀୟ ବଣମଣିଷ ହେଉଛି ଏ ଦେଶରେ ଦେଖାଯାଉଥିବା ଏକମାତ୍ର ଗରିଲା ଜାତୀୟ ମାଙ୍କଡ଼ । ସବୁ ଜାତିର ଗରିଲାମାନଙ୍କ ମଧ୍ୟରେ ଏହା ଦୈହିକ କଳାକୌଶଳ ପ୍ରଦର୍ଶନରେ ଅତି ନିପୁଣ ବା ଶ୍ରେଷ୍ଠ ବିବେଚିତ ହୋଇଛି । ଦେହସାରା କଳାରଙ୍ଗର ଲୋମ ସାଙ୍ଗକୁ ତାର ଗୋଲ ମୁହଁରେ ଭୂଲତା ପରିବର୍ତ୍ତେ ସ୍ୱଚ୍ଛ ଧଳା ରଙ୍ଗର ପଟି ଦୁଇଟି ଅଛି । ଲମ୍ବହାତ ଓ ଲାଞ୍ଜହୀନତା ଗରିଲାର ଗଠନ ବୈଶିଷ୍ଟ୍ୟ । କାନ୍ଧ ଗଣ୍ଠିର ନମନୀୟତା ଯୋଗୁଁ ସ୍ୱାଧୀନ ଭାବରେ ବାହୁଚାଳନା କରିବାରେ ଏହାର ବେଶ ଦକ୍ଷତା ଅଛି । ଏହାର ଲମ୍ବହାତ ଗଛଡ଼ାଳରେ ଅଙ୍କୁଶ ବା ହୁକ୍ ପରି ବାନ୍ଧି ହୋଇଯାଏ । ତେଣୁ ଗୋଟିଏ ହାତରେ ଗଛର ଶାଖାକୁ ଜାବୁଡ଼ି ଧରି ଆଗକୁ ଝୁଲିପଡ଼ି ଅନ୍ୟ ହାତରେ ଏହା ପାଖ ଶାଖାଟିକୁ ଧରେ । ଏହିଭଳି ବେଳେବେଳେ ଗୋଟିଏ ଲମ୍ଫରେ ତିନିମିଟର ପର୍ଯ୍ୟନ୍ତ ପାର ହୋଇ ବଡ଼ବଡ଼ ଗଛର ଅଗଡ଼ାଳରେ ଆଶ୍ଚର୍ଯ୍ୟ ଗତିରେ ଏହା ଜଙ୍ଗଲ ଭିତରେ ଗତିକରେ । ଲମ୍ଫ ଦେଲାବେଳେ ବଣମଣିଷ ଗଛର ଶାଖାଠାରୁ ଆହୁରି ଉପରକୁ ଝୁଲିପଡ଼େ ଓ ତା ଶରୀରକୁ ଅନ୍ୟ ଶାଖା ଉପରକୁ ନିକ୍ଷେପ କଲାଭଳି ବାହୁ ଟେକି ଅତି ବେଗରେ ଅନ୍ୟଡ଼ାଳଟିକୁ ଧରିନିଏ । ବଣମଣିଷର ବାହୁ ଦୁଇଟି ଏତେ ଲମ୍ବ ଯେ, ସେ ଠିଆ ହେଲାବେଳେ ଆଙ୍ଗୁଠି ଗୁଡ଼ିକର ଅଗ୍ରଭାଗ ଭୂମିସ୍ପର୍ଶ କରେ । ଏହାର ନାକଦଣ୍ଡାଟି ଅନ୍ୟ ଗରିଲାମାନଙ୍କ ଅପେକ୍ଷା ଉଚ୍ଚ ବା ସମୁନ୍ନତ । ବଣମଣିଷର ଭୂଲତା ଦୁଇଟି ଉଚ୍ଚ ହୋଇ ସାମନାକୁ ଝୁଲି ଆସିନଥିଲେ ଓ କପାଳଟି ଚଡ଼ାଣିଆ ହୋଇନଥିଲେ ଏହା ଠିକ୍ ମଣିଷ ପରି ଦିଶୁଥାଆନ୍ତା । ଭାରତର ଉତ୍ତର ପୂର୍ବାଞ୍ଚଳରେ ଥିବା ଘନ ଜଙ୍ଗଲରେ ବଣମଣିଷ ବାସ କରେ ।



ବଙ୍ଗଳାଦେଶ, ଚୀନ, ଓ ବ୍ରହ୍ମଦେଶର କେତେକ ଅଞ୍ଚଳରେ ମଧ୍ୟ ଏହା ଦେଖିବାକୁ ମିଳେ । ଗଛର ପତ୍ର, ଫଳ, ଫୁଲ ଓ କୀଟପତଙ୍ଗ ଏହାର ଖାଦ୍ୟ । ନିଜର ଛୋଟ ପରିବାରରେ ପୁରୁଷ ଓ ସ୍ତ୍ରୀ ସହିତ ଦୁଇ ତିନୋଟି ଛୁଆଙ୍କୁ ନେଇ ବଣମଣିଷ ବାସ କରେ ।

## ବିରାଡ଼ି ପରିବାର (THE CAT FAMILY)

ସିଂହ, ବାଘ, ଚିତାବାଘ ଓ ପୋଷା ବିରାଡ଼ି ଆଦି ସମସ୍ତେ ଫେଲିଡ୍‌ (Felidae) ନାମକ (ବିରାଡ଼ି ଜାତି) ସମପରିବାର ଅନ୍ତର୍ଭୁକ୍ତ । କ୍ଷିପ୍ର ଗତିରେ ଦୌଡ଼ିଲା ଭଳି ସୁଗଠିତ ଶରୀର, ମାଂସକୁ କାମୁଡ଼ି ଚିକିଚିକି କରି ଛିଡ଼ାଇଲା ଭଳି (ଚୋବେଇବାକୁ ନୁହେଁ) ସ୍ୱତନ୍ତ୍ରଭାବେ ପରିକଳ୍ପିତ ଦାନ୍ତ ଓ ଶିକାରକୁ ଆଘାତ କରି ଧରିଲାଭଳି ତୀକ୍ଷ୍ଣ ନଖ ଇତ୍ୟାଦି ଯୋଗୁଁ ଏମାନେ ମାଂସାଶୀ ପ୍ରାଣୀ ଭାବରେ ଅତି ଉପଯୋଗୀ । ଏକ ଅସାଧାରଣ ଶିକାରଜୀବି ପ୍ରାଣୀର ଉପଯୋଗୀ ହେଲା ଭଳି ଅନୁରୂପ ବିଚକ୍ଷଣ ବୁଦ୍ଧି ଓ ତୀବ୍ର ଶ୍ରବଣଶକ୍ତି ଏମାନଙ୍କର ଅଛି । ସମସ୍ତ ମାଂସ-ଭୋଜୀ ପ୍ରାଣୀ ମାନଙ୍କ ଠାରୁ ବିରାଡ଼ିର ହିଁ ବଡ଼ ଆଖି ଓ ଚମତ୍କାର ଦୃଷ୍ଟିଶକ୍ତି ଅଛି । ବିରାଡ଼ିର ଶିକାର କରିବା ପ୍ରଣାଳୀ ହେଉଛି ଶିକାରକୁ ଅତର୍କିତ ଭାବରେ ଧରିନେବା । ସେ ଛପିରହି ଶିକାରକୁ ଅପେକ୍ଷା କରେ ଓ ଶିକାର ତା ପରିସର ମଧ୍ୟକୁ ଆସିବାମାତ୍ରେ ବିଜୁଳି ବେଗରେ ଲମ୍ଫଦେଇ ଧରିନିଏ । ବଣୁଆ ବିରାଡ଼ି ମାନଙ୍କ ଦାନ୍ତ ସ୍ୱତନ୍ତ୍ର ଭାବରେ ମାଂସ ଖାଇବା ଉପଯୋଗୀ । ଶ୍ୱାନ ଦାନ୍ତ ଓ ଛାମୁ ଦାନ୍ତ ଗୁଡ଼ିକ ଶିକାରକୁ ଜବତ କରି କାମୁଡ଼ି ଧରିବାକୁ ଓ କଳଦାନ୍ତଗୁଡ଼ିକ ମାଂସ କାଟି ଖାଇବାରେ ସାହାଯ୍ୟ କରେ । ବାଘ ହେଉଛି ବିରାଡ଼ି ପରିବାରର ସର୍ବବୃହତ ସଦସ୍ୟ । ତା ତଳକୁ ସିଂହ ଓ ସିଂହପରେ ଚିତାବାଘର ସ୍ଥାନ । ଚିତାରଚିତା ଓ ମେଘୁଆଚିତା ଏପରି ଅନ୍ୟ ଦୁଇଟି ଚିତାବାଘ ଜାତିର (ଦୁଇ ରକମର) ଜୀବ ଭାରତରେ ଦେଖାଯାଆନ୍ତି । ଖଣ୍ଡୁଆ ବିରାଡ଼ି (Marbled cat), ମାଛରଙ୍କା ବିରାଡ଼ି (Fishing Cat), ଚିତା ବିରାଡ଼ି (Leopard Cat), ସୁନାପୁଷି (Golden Cat), କଟାସ (Jungle Cat), ଆଦି ନାନା ଜାତିର ବିରାଡ଼ି ଭାରତରେ ଦେଖିବାକୁ ମିଳନ୍ତି । ଅବୈଧ ଶୀକାର ଓ ବାସସ୍ଥଳୀ ନଷ୍ଟଭ୍ରଷ୍ଟ ହୋଇଯିବା ଫଳରେ ବିରାଡ଼ି ପରିବାରର ପ୍ରାୟ ସବୁ ପ୍ରକାର ପ୍ରାଣୀ ଆଜି ବିପନ୍ନ ହୋଇ ପଡ଼ିଛନ୍ତି ।

### ବାଘ

*Panthera Tigers* (Linnaeus)

ସବୁ ମାଂସାଶୀ ଜୀବ ମାନଙ୍କ ମଧ୍ୟରେ ଅତି ମନୋରମ ଓ ପ୍ରତାପୀ ଜନ୍ତୁ ହେଉଛି ବାଘ । ଶିକାରୀ-ଜୀବ ଭାବରେ ଏହା ସବୁଠାରୁ ଦକ୍ଷ । ଭାରତର ବିଭିନ୍ନ ଅଞ୍ଚଳରେ ଥିବା ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟ, ଲୁଣାଜଙ୍ଗଲ, ପତ୍ରଝଡ଼ା ଜଙ୍ଗଲ ତଥା ତୃଣଭୂମି ଆଦି ବିଭିନ୍ନ ପାରିବେଶିକ ଆବାସସ୍ଥଳୀଗୁଡ଼ିକୁ ଏହା ଅଧିକାର କରି ରହେ । ବାଘ ମଧ୍ୟ ପହଁରିବାରେ ଅତି ଦକ୍ଷ । ଭାଲୁମିଶା ହଳଦୀ ରଙ୍ଗର ଦେହ

ଉପରେ ବିଭିନ୍ନ ଲମ୍ବା ଓ ଚଉଡ଼ାର ଡେଣ୍ଟା, ଖଣ୍ଡଖଣ୍ଡିଆ, କଳା ପଟାପଟା ଦାଗ ଯୋଗୁଁ ଅନ୍ୟଜନ୍ତୁମାନଙ୍କଠାରୁ ବାଘ ସ୍ପଷ୍ଟ ବାରି ହୋଇ ପଡ଼େ । ଏହାର ଗୋଡ଼ରେ ମଧ୍ୟ କଳା ପଟାପଟା ଦାଗ ଓ ଲାଞ୍ଜ ସାରା କଳାରଙ୍ଗ ମୁଦିଆ (Ring) ଚିହ୍ନମାନ ଦେଖାଯାଏ । ବାଘର ଘ୍ରାଣ ଶକ୍ତି ଓ ଦୃଷ୍ଟିଶକ୍ତି ଭଲ ନୁହେଁ । ମାତ୍ର ଏହାର ଶ୍ରବଣ ଶକ୍ତି ଅତି ପ୍ରଖର । ହଲ୍‌ଚଲ୍ ନହୋଇ ନୀରବ ଭାବରେ ଠିଆ ହୋଇଥିବା ବାଳି ହରିଣ ଜାତୀୟ ପଶୁକୁ ନଜାଣିପାରି ବାଘ ହୁଏତ ତା ପାଖ ଦେଇ ଚାଲିଯାଇପାରେ । ମାତ୍ର ଯଦି ପଶୁଟି କାନ ହଲାଏ ବା ଗୋଡ଼ ହଲ୍‌ଚଲ୍ କରିଦିଏ, ତାହେଲେ ତତ୍‌କ୍ଷଣାତ୍ ବାଘର ଦୃଷ୍ଟି ଶିକାର ଉପରେ ପଡ଼େ ଓ ସେ ତାକୁ (ଶିକାରକୁ) ଆକ୍ରମଣ କରେ ।

ଅତି ସତର୍କତାର ସହ ଶିକାର ଉପରେ ବାଘ ଝାମ୍ପ ମାରେ । ଶିକାରର ଅଜାଣତରେ ତା'ର ଅତି ନିକଟରୁ ତାର ବେଗରେ କୁଦିପଡ଼େ । ବାଘ କେତେ କୁଦାମାରି ଶିକାର ଉପରେ ଝାମ୍ପ ଦେଲା ପୂର୍ବରୁ ପଶୁଟି ବାଘକୁ ଦେଖିପାରେ ନାହିଁ । ବାଘ ଆସିବାର ଶବ୍ଦ ଶୁଣିପାରେ ନାହିଁ, କିମ୍ବା ବାଘର ଗନ୍ଧ ମଧ୍ୟ ତା ନାକରେ ବାଜେ ନାହିଁ । ଅତର୍କିତ ଭାବରେ ଆକ୍ରମଣ କରି ବାଘ ଶିକାରକୁ ମାରିଦିଏ । ତା'ପରେ ଏକ ନିରାପଦ ସ୍ଥାନକୁ ମୃତପଶୁଟିକୁ ଟାଣିନେଇ ପେଟ ଭରି ତାର ମାଂସ ଖାଏ । ଖାଇସାରି ପାଖରେ କେଉଁଠି ସେ ଶୋଇଯାଏ । ମାଂସ ପଚିଗଲେ ମଧ୍ୟ ଥରକୁ ଥର ମଢ଼ ପାଖକୁ ଆସି ବାଘ ସେହି ମାଂସ ଖାଏ । ସାଧାରଣତଃ ନାନା ଜାତିର ହରିଣ, ସମ୍ବର ଓ ମଇଁଷି ଭଳି ବଡ଼ବଡ଼ ଵନ୍ୟପ୍ରାୟ ପ୍ରାଣୀମାନଙ୍କୁ ବାଘ ଶୀକାର କରେ ।

ଶକ୍ତିଶାଳୀ ହେଲେ ମଧ୍ୟ ବାଘ ଖୁବ୍ ଭଦ୍ର । ସାଧାରଣତଃ ମଣିଷକୁ ସେ ଭୟ କରେ ଏବଂ ଅତି ଅସୁବିଧାଜନକ ଅବସ୍ଥାରେ ପଡ଼ିଲେ ହିଁ ସେ ମଣିଷକୁ ଆକ୍ରମଣ କରେ । ଅଧିକାଂଶ କ୍ଷେତ୍ରରେ ବାଘ ଅକର୍ମଣ୍ୟ ହୋଇ ଶିକାର କରିବା ପାଇଁ ଅପାରଗ ହୋଇଗଲେ କିମ୍ବା ତାର ଅଞ୍ଚଳ ଭିତରକୁ ଅନଧିକାର ପ୍ରବେଶ କଲେ ସେ ମଣିଷକୁ ଆକ୍ରମଣ କରେ । ବିଶେଷତଃ ବାଘ ଯେତେବେଳେ ତା ଛୁଆକୁ ବା ଶିକାରକୁ ଜଗି ବସିଥାଏ ସେତେବେଳେ ଏପରି ଘଟେ ।

ବାଘମାନେ ବୃଦ୍ଧ ବୟସରେ ମାଛ, କଙ୍କଡ଼ା, ଝିଣ୍ଟିକା, କଙ୍କଡ଼ାବିଛା ଓ ବେଙ୍ଗ ଇତ୍ୟାଦି ଖାଇ ଯଥା ତଥା ବଞ୍ଚି ଯାଆନ୍ତି । ଶିକାର ଖୋଜି ଗଲାବେଳେ ବାଘ ସିଧା ରାସ୍ତା ଦେଇ ଘଞ୍ଚ ଅରଣ୍ୟ ଭିତରେ ଯିବା ଅପେକ୍ଷା ଶିକାର ଜନ୍ତୁ ଯିବା ରାସ୍ତା, ମଣିଷର ଚଲାବାଟ ଓ ନଦୀ ବା ଝରଣାକୂଳ ଦେଇ ଶିକାର ଖୋଜି ଯିବାକୁ ସେ ପସନ୍ଦ କରେ ।

ବାଘମାନେ ସାଧାରଣତଃ ସ୍ୱାଧୀନ ଚେତା ଓ ଏକାକୀ ରହିବାକୁ ପସନ୍ଦ କରନ୍ତି । ବେଳେବେଳେ ସେମାନେ ଦୀର୍ଘଦିନ ଧରି ଯୋଡ଼ିଯୋଡ଼ି ହୋଇ ରହନ୍ତି । ସେମାନଙ୍କର କୌଣସି ମଳମାସ ବା ସଙ୍ଗମ ଋତୁ ନାହିଁ । ମାଈ ବାଘ ଯୌନ ଉତ୍ତେଜିତ ଅବସ୍ଥାରେ ପୁରୁଷ ବାଘକୁ ଗ୍ରହଣ କରେ ଓ ସେତିକି ବେଳେ ସଂଗମ ଘଟିଥାଏ । 105 ରୁ 109 ଦିନ ଗର୍ଭାବସ୍ଥା ପରେ ବାଘୁଣୀଠାରୁ ଗୋଟିଏରୁ ପାଞ୍ଚଟି ପର୍ଯ୍ୟନ୍ତ ଛୁଆ ଜନ୍ମ ହୁଅନ୍ତି । ତେବେ, ଅଧିକାଂଶ କ୍ଷେତ୍ରରେ ସାଧାରଣତଃ ଥରକେ ଦୁଇଟି କରି ଛୁଆ ଜନ୍ମ ହେବାର ଦେଖାଯାଏ । ବୟଃପ୍ରାପ୍ତିର ପ୍ରାୟ ଅଧାସମୟ ପର୍ଯ୍ୟନ୍ତ

ବାଘଛୁଆ ମାଆକୁ ଛାଡ଼ି ଯାଏନାହିଁ । ବାଘମାନେ ପ୍ରାୟ 18-19ବର୍ଷ ପର୍ଯ୍ୟନ୍ତ ବଞ୍ଚିରହନ୍ତି ।

ଭାରତୀୟ ବାଘ ସଂରକ୍ଷଣ ସାଫଲ୍ୟ କାହାଣୀର ପ୍ରତିନିଧିତ୍ୱ କରେ । ପଚାଶବର୍ଷ ତଳେ ଭାରତରେ 40,000ରୁ ଅଧିକ ସଂଖ୍ୟକ ବାଘ ଥିବାର ବିଶ୍ୱାସ କରାଯାଏ । ଶିକାର ତଥା ସେମାନଙ୍କ ବାସସ୍ଥଳୀର ବିନାଶ ଯୋଗୁଁ ଅତୀଶିଘ୍ର ସେମାନଙ୍କ ସଂଖ୍ୟା ହ୍ରାସ ପାଇଗଲା । 1972ମସିହାର ଜାତୀୟ ବ୍ୟାଘ୍ର ଗଣନା ଅନୁସାରେ ଦେଶରେ ମାତ୍ର 1827ଟି ବାଘ ଥିଲେ । ଏହି ରାଜକୀୟ ପଶୁର ଭୟଙ୍କର ବିପନ୍ନ ଅବସ୍ଥା ବିଚାରକୁ ନେଇ 1973 ମସିହାରେ ଭାରତ ସରକାର ବାଘମାନଙ୍କୁ ରକ୍ଷା କରିବା ପାଇଁ "ବ୍ୟାଘ୍ର ଯୋଜନା ପ୍ରକଳ୍ପ" ନାମକ ଏକ ପ୍ରକଳ୍ପ ଆରମ୍ଭ କଲେ ।

ଏହି ପ୍ରକଳ୍ପ ଅନୁଯାୟୀ ନଅଗୋଟି ଅଭୟାରଣ୍ୟରେ ବାଘମାନଙ୍କୁ ସୁରକ୍ଷିତ ଘୋଷଣା କରାଗଲା । ସମୟକ୍ରମେ ଅଧିକ ସଂଖ୍ୟକ ବ୍ୟାଘ୍ର ସଂରକ୍ଷିତ ଅଭୟାରଣ୍ୟ ଏଥିସହିତ ମିଶି 19ଟି ଅଭୟାରଣ୍ୟ ବା ଜାତୀୟ ଉଦ୍ୟାନ ଏହି ବ୍ୟାଘ୍ର ପ୍ରକଳ୍ପର ଅନ୍ତର୍ଭୁକ୍ତ ହୋଇଛି । ସୁବ୍ୟବସ୍ଥିତ ପରିଚାଳନା ଓ ଆବାସ ସ୍ଥଳୀର ପୁନର୍ଗଠନ ଫଳରେ ବାଘ ସଂଖ୍ୟା ଧିରେ ଧିରେ ବଢ଼ିଛି । ଏବେ ଭାରତୀୟ ଅରଣ୍ୟ ମାନଙ୍କରେ 4000 ରୁ ଅଧିକ ବାଘ ଥିବାର ଅଟକଳ କରାଯାଏ ।

ବ୍ୟାଘ୍ର ପ୍ରକଳ୍ପ ଏକ ସମ୍ପୂର୍ଣ୍ଣ ସର୍ବାଙ୍ଗୀନ ସଂରକ୍ଷଣ କାର୍ଯ୍ୟକ୍ରମ । ବାଘକୁ ଅନ୍ୟମାନଙ୍କର ଠାରୁ ପୃଥକ ରଖି ବଞ୍ଚାଯାଇ ପାରିବ ନାହିଁ । ଏହା ସାଙ୍ଗକୁ ତାର ଶିକାର ଯୋଗ୍ୟ ବିଭିନ୍ନ ଜାତିର ତୃଣଭୋଜି ପ୍ରାଣୀମାନଙ୍କୁ ରଖିବାକୁ ପଡ଼ିବ । ତୃଣଭୋଜି ପ୍ରାଣୀମାନଙ୍କର ବଞ୍ଚିବା ପାଇଁ ଅରଣ୍ୟରେ ନାନା ଜାତିର ବୃକ୍ଷଲତା ଘଞ୍ଚ ହୋଇ ରହିବାର ନିଶ୍ଚିତତା ଥିବା ଆବଶ୍ୟକ । ତେଣୁ ବାଘକୁ ବଞ୍ଚାଇ ରଖିବାର ଅର୍ଥ, ସମସ୍ତ ପାରିବେଶିକ ବ୍ୟବସ୍ଥାକୁ ବଞ୍ଚାଇ ରଖିବା ।

ଅରଣ୍ୟର ପାରିବେଶିକ ବ୍ୟବସ୍ଥାକୁ ବଞ୍ଚାଇ ରଖିବାରେ ବାଘର ଭୂମିକା ବିଶେଷ ଗୁରୁତ୍ୱପୂର୍ଣ୍ଣ । ବନ୍ୟ ଖାଦ୍ୟ ପିରାମିଡ଼ର ସର୍ବୋଚ୍ଚ ସ୍ଥାନରେ ବାଘ ଅଧିଷ୍ଠିତ । କାରଣ, ଏହା ତୃଣଭୋଜୀ ପ୍ରାଣୀମାନଙ୍କ ସଂଖ୍ୟା ନିୟନ୍ତ୍ରିତ କରେ । ଯାହା ଫଳରେ ସେମାନଙ୍କ ଦ୍ୱାରା ଅତ୍ୟଧିକ ପରିମାଣର ବୃକ୍ଷଲତା ନଷ୍ଟ ହେବାରୁ ରକ୍ଷା ପାଏ ଓ ତଦ୍ୱାରା ମୃତ୍ତିକା କ୍ଷୟ ବନ୍ଦ ହୁଏ । ବାଘ ଦୁର୍ବଳ ତୃଣଭୋଜୀ ପ୍ରାଣୀମାନଙ୍କୁ ମାରି ଖାଇଯିବା ଦ୍ୱାରା କେବଳ ସୁସ୍ଥସବଳ ତୃଣଭୋଜୀ ପ୍ରାଣୀମାନଙ୍କ ସଂଖ୍ୟା ବୃଦ୍ଧି ସୁନିଶ୍ଚିତ ହୋଇଥାଏ ।

ମଧ୍ୟପ୍ରଦେଶର ରେୱା ଜଙ୍ଗଲରେ 1951 ମସିହାରେ ପ୍ରଥମ ଧଳାବାଘଟି ଧରା ଯାଇଥିଲା । ଏହାକୁ ରୋଟିଏ ସାଧାରଣ ବାଘୁଣୀ ସହିତ ସଂଗମ ପାଇଁ ଛାଡ଼ି ଦିଆଗଲା । ଏବେ ଭାରତ ତଥା ପୃଥିବୀ ସାରା ଅନେକ ଚିଡ଼ିଆଖାନାରେ 40 ରୁ ଅଧିକ ସଂଖ୍ୟକ ଧଳାବାଘ ଅଛନ୍ତି । ଧଳାବାଘ ମାନଙ୍କର ପ୍ରକୃତି ଓ ବାସସ୍ଥଳୀ ସାଧାରଣ ବାଘମାନଙ୍କ ଠାରୁ ଭିନ୍ନ ନୁହେଁ । ଏମାନେ ପ୍ରକୃତରେ ବାଘ ଜାତିର ଏକ ପରିବର୍ତ୍ତିତ ସୃଷ୍ଟି । ଏମାନଙ୍କ ଦେହରେ କେବଳ ରଙ୍ଗ ସୃଷ୍ଟିକାରୀ ଜୀବକୋଷର ବିଲୟ ଘଟିଛି ।

### ଏସୀୟ ସିଂହ

*Panthera leo presica* (Meyer)

ବାଘ ତୁଳନାରେ ଏସୀୟ ସିଂହ ମାନଙ୍କର ଅବସ୍ଥା ଆହୁରି ସଙ୍କଟାପନ୍ନ । ଏକଦା ମଧ୍ୟଭାରତ, ରାଜସ୍ଥାନ, ଉତ୍ତରଭାରତର ଅଧିକାଂଶ ଅଞ୍ଚଳ ଓ ଏପରିକି ଦକ୍ଷିଣରେ ନର୍ମଦା ନଦୀ ପର୍ଯ୍ୟନ୍ତ ଦେଖାଯାଉଥିବା ସିଂହମାନେ ଏବେ ମାତ୍ର ଗୁଜୁରାଟର ଗୀର୍ ଜଙ୍ଗଲରେ ଆବଦ୍ଧ ହୋଇ ରହିଛନ୍ତି । 1907 ମସିହାରେ ମାତ୍ର 13ଟି ସିଂହ ଏହି ଜଙ୍ଗଲରେ ଥିଲେ । ସେତେବେଳେ ଜୁନାଗଡ଼ ମହାରାଜା ସେମାନଙ୍କୁ ପୂର୍ଣ୍ଣ ସୁରକ୍ଷା ପ୍ରଦାନ କରୁଥିଲେ ।

ବାଘ ଯେପରି ବୃକ୍ଷଲତା ଆଚ୍ଛାଦିତ ବିସ୍ତୀର୍ଣ୍ଣ ଘଞ୍ଚ ଅରଣ୍ୟରେ ବାସ କରିବାକୁ ଭଲପାଏ, ସିଂହ ସେପରି ଚାହେଁ ନାହିଁ । ସେ ବୁଦିବୁଦିକିଆ ପତ୍ରହୀନ ଜଙ୍ଗଲରେ ରହିବାକୁ ଭଲ ପାଏ । ପ୍ରବଳ ଶକ୍ତିଶାଳି ବିଶିଷ୍ଟ ଏହି ପ୍ରାଣୀ ରାତିରେ ଶିକାର କରିବାକୁ ଭଲ ପାଏ । ଆଫ୍ରିକାରେ ଦେଖାଯାଉଥିବା ସିଂହ ତୁଳନାରେ ଏସୀୟ ସିଂହର କମ୍ କେଶର ଥାଏ । ସିଂହୀର ଆଦୌ କେଶର ନଥାଏ । ସିଂହର ଈଷତ୍ ହଳଦିଆ ବା ନାଲି ମିଶା ମାଟିଆ ରଙ୍ଗ ଚମଡ଼ା ଉପରେ କୌଣସି ଦାଗ ନଥାଏ । ମାତ୍ର ସିଂହ ଶିଶୁ ଚମଡ଼ାରେ ବିଭିନ୍ନ ଦାଗ, ବିଶେଷ କରି ପଟା ପଟା ଦାଗ ଥାଏ ।

ବିରାଡ଼ି ପରିବାର ମଧ୍ୟରେ ସିଂହମାନେ ଅତ୍ୟଧିକ ମେଳାପି । ଯଦିଓ ସିଂହମାନେ ବିଶେଷ କରି ଅଣିରା ସିଂହ ଏକୁଟିଆ ରହିପାରେ, ତଥାପି ସେମାନେ ପାଖାପାଖି ହୋଇ ଦଳୀୟ ଢାଞ୍ଚାରେ ରହିବାର ଦେଖାଯାଏ । ଏହି ଦଳକୁ "ପ୍ରାଇଡ୍" କୁହାଯାଏ । ଗୋଟିଏ "ପ୍ରାଇଡ୍"ରେ ପାରସ୍ପରିକ ସଂପର୍କ ଥିବା ଅନେକ ସିଂହୀ ସେମାନଙ୍କ ଶିଶୁ ମାନଙ୍କ ସହିତ ବାସ କରନ୍ତି । ବୟସ୍କ ଅଣିରା ସିଂହ ସାମୟିକ ଭାବରେ "ପ୍ରାଇଡ୍"ର ସଭ୍ୟଭୁକ୍ତ ହୋଇ କେତେମାସ ବା କେତେବର୍ଷ ପର୍ଯ୍ୟନ୍ତ ସିଂହୀମାନଙ୍କ ମେଳରେ ରହିଯାଏ । ଏହି ପ୍ରାଇଡ୍‌ର ଅଧିକାରୀ ହେବା ପାଇଁ ଅଣିରାସିଂହ ମାନଙ୍କ ମଧ୍ୟରେ ଭୟଙ୍କର ଲଢ଼େଇ ହୁଏ । ଲଢ଼େଇରେ ବିଜୟ ହାସଲ କରିଥିବା ସିଂହଟି ସମଗ୍ର ଦଳ ଉପରେ ଆଧିପତ୍ୟ ବିସ୍ତାର କରେ । ଯେତେବେଳେ ତା'ଠାରେ ଦୁର୍ବଳତା ପ୍ରକାଶ ପାଏ, ସେତେବେଳେ ତା'ଠାରୁ ଅଳ୍ପବୟସ୍କ ବଳିଷ୍ଠ ଅଣିରା ସିଂହ ଦ୍ୱାରା ସେ ଦଳରୁ ବିତାଡ଼ିତ ହୁଏ । କେବଳ ସେହି ଶକ୍ତିମାନ ବଳିଷ୍ଠ ସିଂହମାନେ ହିଁ "ପ୍ରାଇଡ୍"ର ଅଧିପତି ହୁଅନ୍ତି । ଦଳରୁ ବିତାଡ଼ିତ ସିଂହ ପୁଣି ଏକ ନୂଆ ପ୍ରାଇଡ୍ ଖୋଜି ତହିଁରେ ମିଶେ ବା ଏକୁଟିଆ ରହେ ।

ହରିଣ, ଶୋଲୁ, ଘୁଷୁରୀ ଓ ଅନ୍ୟ ତୃଣଭୋଜି ପ୍ରାଣୀମାନଙ୍କୁ ଖାଇ ସିଂହ ଜୀବନ ଧାରଣ କରେ । ଅଳ୍ପଦୂରରୁ ଜଗି ରହି ଅତି ସତର୍କତାର ସହିତ ତୀବ୍ର ବେଗରେ (ଘଣ୍ଟାରେ ପ୍ରାୟ 80 କିଲୋମିଟର ଗତିରେ) ସିଂହ ଶିକାର ଉପରେ ଝାମ୍ପମାରେ । ଗୋଟିଏ ପନ୍ଝାରେ ଶିକାରକୁ ପିଠି ଉପରୁ ମାଡ଼ିବସି ଅନ୍ୟ ପଂଝାରେ ତାର ଛାତି ବା ପେଟରେ ଗୋଟିଏ ପଟରୁ ଠେଲି ତଳେ ପକାଇ ଦିଏ । ତା'ପରେ ଶିକାରର ତଣ୍ଟିକୁ କାମୁଡ଼ି ଧରି ତାର ଶ୍ୱାସରୁଦ୍ଧ କରି ମାରିଦିଏ । ସିଂହୀମାନେ ଅଧିକାଂଶ ଶିକାର କରନ୍ତି ଓ ପରେ ପରିବାରର ଅନ୍ୟମାନଙ୍କ ସହିତ ମିଶି ଶିକାରକୁ ଖାଇବାରେ



ସିଂହଲାଞ୍ଜିଆ ମାଙ୍କଡ଼ (ପୃ 17 ଦେଖନ୍ତୁ)



ହିମାଳୟର ମଟିଆ ଭାଲୁ (ପୃ 37 ଦେଖନ୍ତୁ)

ସିଂହ ଅଂଶ ଗ୍ରହଣ କରେ । ଯେହେତୁ ସିଂହମାନେ ହାଡ଼ ନଚୋବାଇ କିମ୍ବା ହାଡ଼କୁ ଚାଟି ସଫା ନକରି କେବଳ ମାଂସ ଖାଆନ୍ତି, ସେହି ହାଡ଼ରେ ଯଥେଷ୍ଟ ବଳକା ମାଂସ ଲାଗିଥାଏ; ଯାହାକି ପଚାମାଂସ ଖାଇ ବଞ୍ଚୁଥିବା ବିଲୁଆ, ଗଧିଆ ଓ ଶାଗୁଣା ଆଦି ପ୍ରାଣୀମାନେ ଖାଇଥାଆନ୍ତି ।

ମନବୋଧ ହେବା ପର୍ଯ୍ୟନ୍ତ ସିଂହମାନେ ଖାଆନ୍ତି । ଭୋକ ନ ଲାଗିବା ଯାଏଁ ସେମାନେ ଶିକାର କରିବାକୁ ଯାଆନ୍ତି ନାହିଁ । ଏପରିକି ବିଶ୍ରାମସ୍ଥଳୀ ନିକଟରେ ଶିକାର ଥିଲେ ମଧ୍ୟ ତାକୁ ଭ୍ରୁକ୍ଷେପ ନକରି ଅନେକ ଦିନ ପର୍ଯ୍ୟନ୍ତ ସିଂହ ବିଶ୍ରାମ ନିଏ । ସିଂହ ମଣିଷକୁ ଆକ୍ରମଣ କରେ ନାହିଁ । ମାତ୍ର ବିରକ୍ତ, ଭୟଭୀତ, ଆହତ କିମ୍ବା ରୁଗ୍ଣ ଅବସ୍ଥାରେ ସେ ଏହା କରେ । ବୁଢ଼ା ସିଂହମାନେ କ୍ୱଚିତ୍‌ପି ମଣିଷ ମାରିବା କଥା ଶୁଣାଯାଏ । କ୍ୱଚିତ୍ ଏପରି ଘଟେ । ଅତି ବୟସ୍କ ସିଂହମାନେ ଶିକାର କରିବାକୁ ଅକ୍ଷମ ହୋଇପଡ଼ିଲେ ମୂଷା, ଠେକୁଆ, କଙ୍କଡ଼ାବିଛା ଓ କୀଟ ପତଙ୍ଗ ଖାଇ ବଞ୍ଚନ୍ତି ।

ବୟଃପ୍ରାପ୍ତ ସିଂହମାନଙ୍କର ସେଭଳି କୌଣସି ସଂଗମଋତୁ ନାହିଁ । ଯେତେବେଳେ ସିଂହୀ ଯୌନ ଉତ୍ତେଜିତ ଅବସ୍ଥାରେ ତାର ପୁରୁଷ ବା ସିଂହ ସହିତ ମିଳନ ଇଚ୍ଛା କରେ, ସେତେବେଳେ ଦୁହେଁ ଯୋଡ଼ି ବାନ୍ଧିକି ହୋଇ ସଙ୍ଗମରେ ଲିପ୍ତ ହୁଅନ୍ତି । 110ଦିନ କାଳ ଗର୍ଭବତୀ ରହିବା ପରେ ସିଂହୀ ଗୋଟିଏରୁ ଛଅଟି ପର୍ଯ୍ୟନ୍ତ ଛୁଆ ଜନ୍ମ କରେ । ଜନ୍ମ ହୋଇଥିବା ଅସହାୟ ସିଂହ ଶାବକ ମାନଙ୍କ ଦେହସାରା ଦାଗ ଥାଏ । ଏହି ସିଂହଶିଶୁ ମାନେ ଚିତାବାଘ, ହେଟାବାଘ ଓ ଅନ୍ୟ ମାଂସାଶୀ ପ୍ରାଣୀ ମାନଙ୍କର ଶିକାର ହୁଅନ୍ତି ଓ ଅନେକ ମଧ୍ୟ ବଞ୍ଚନ୍ତି ନାହିଁ । ଯେଉଁମାନେ ବଞ୍ଚି ରହନ୍ତି, ଖୁବ୍ ଶୀଘ୍ର ବଢ଼ି ପ୍ରାୟ ଏକବର୍ଷ ବୟସ ସୁଦ୍ଧା ନିଜେ ଶିକାର କରିବାକୁ ସକ୍ଷମ ହୁଅନ୍ତି । ଦୁଇବର୍ଷ ବେଳକୁ ସେମାନଙ୍କର ବୟଃପ୍ରାପ୍ତି ହୁଏ । ସିଂହମାନେ 20 ରୁ 30ବର୍ଷ ପର୍ଯ୍ୟନ୍ତ ବଞ୍ଚିରହନ୍ତି । ମାତ୍ର ଜଙ୍ଗଲରେ ଏତେ ଦିନ ଧରି ବଞ୍ଚିଥିବାର ସିଂହ କ୍ୱଚିତ୍ ଦେଖାଯାଆନ୍ତି ।

ବାଘକୁ ଭାରତର ଜାତୀୟ ପଶୁ ଭାବରେ ନାମିତ କରିବା ପୂର୍ବରୁ ଯାହାକୁ "ଜାତୀୟ ପଶୁ" ବୋଲି ଘୋଷଣା କରାଯାଇଥିଲା, ଜଙ୍ଗଲ ନଷ୍ଟ ହେବା ଫଳରେ, ବାସସ୍ଥଳୀର ବିଧ୍ୱଂସନ, ଶିକାର ଓ ମାନବୀୟ ପ୍ରତିବନ୍ଧକ ଯୋଗୁଁ ସେହି ଜଙ୍ଗଲର ରାଜା ସିଂହ ଅତି ବିପଦଗ୍ରସ୍ତ ହୋଇ ପଡ଼ିଛି । କଠୋର ସୁରକ୍ଷା ମଧ୍ୟରେ ଗୁଜରାଟର ଗୀର୍ ଜଙ୍ଗଲରେ ଦୁଇଶହରୁ କିଛି ଅଧିକ ସଂଖ୍ୟକ ଏହି ଜାତୀୟ ପଶୁ ଏବେ ବଞ୍ଚି ରହିଛନ୍ତି । ପୃଥିବୀର ବିଭିନ୍ନ ଚିଡ଼ିଆଖାନାରେ ସୁରକ୍ଷିତ ଅନ୍ୟମାନଙ୍କୁ ବାଦ ଦେଲେ ଏସୀୟ ସିଂହମାନଙ୍କ ଲାଗି ଏହି ଜଙ୍ଗଲ ହେଉଛି ଶେଷ ଆଶ୍ରୟ ସ୍ଥଳ ।

### କଲରା ପତ୍ରିଆ ବାଘ

*Panthera pardus* (Linnaeus)

ବାଘ କିମ୍ବା ସିଂହ ଅପେକ୍ଷା କଲରା ପତ୍ରିଆ ବାଘର ଆକୃତି ଛୋଟ ଓ ଏହା ଏକ ପ୍ରଚଣ୍ଡ ଆଶୁ ପ୍ରତିକ୍ରିୟାଶୀଳ ଭୟପ୍ରଦ ପ୍ରାଣୀ । କଲରା ପତ୍ରିଆ ବାଘ ଅତୀବ ନିର୍ଭୀକ ଜନ୍ତୁ ଓ କୌଣସି ବିରକ୍ତିକର ପରିସ୍ଥିତିରେ କିମ୍ବା ଅସୁବିଧାଜନକ ଅବସ୍ଥାରେ ସେ ଭୀଷଣ ନୃଶଂସ ଭାବରେ ଲଢ଼େଇ

କରିବାକୁ ତତ୍ପର ହୋଇ ଉଠେ । ଆଂଶିକ ମରୁପ୍ରାନ୍ତୀୟ ଜଳବାୟୁ ବା ବୃକ୍ଷହୀନ ପାହାଡ଼ିଆ ଅଞ୍ଚଳରେ ବାସ କରୁଥିବା କଲରାପତ୍ରିଆ ବାଘମାନେ ଫିକା ରଙ୍ଗର ଓ ଅପେକ୍ଷାକୃତ ବଡ଼ ଆକୃତିର ହୋଇଥାନ୍ତି । ଏମାନଙ୍କର ହାରାହାରି ଲମ୍ବ ଏକରୁ ଦେଢ଼ମିଟର ଏବଂ ଓଜନ ୨୦କିଲୋଗ୍ରାମ ହୁଏ । ନିମ୍ନଭୂମି ଜଙ୍ଗଲ ଓ ପାହାଡ଼ିଆ ଜିଲ୍ଲା ମାନଙ୍କରେ କଲରାପତ୍ରିଆ ବାଘ ମାନଙ୍କ ଆକୃତି ସାଧାରଣତଃ ସାନ ଓ ରଙ୍ଗ ଗାଢ଼ ଧୂସରିଆ ହୋଇଥାଏ । ଏଥିସହିତ ଦେହସାରା ବିଭିନ୍ନ ଆକୃତିର ବହୁତ କଳା ଦାଗ ଓ ଗୋଲ୍ ଗୋଲ୍ କଳା ମୁଦିଆ ଦାଗମାନ ଥାଏ । କେତେକ ଅଞ୍ଚଳରେ ସମ୍ପୂର୍ଣ୍ଣ କଳାରଙ୍ଗର ଅନେକ କଲରାପତ୍ରିଆ ବାଘ ଦେଖାଯାଆନ୍ତି । ଏମାନଙ୍କୁ କଳାବାଘ (କଳା ପାନ୍ଥର) ବୋଲି କୁହାଯାଏ ।

ଭାରତରେ ଦେଖାଯାଉଥିବା କଲରାପତ୍ରିଆ ବାଘମାନଙ୍କ ଦେହର ରଙ୍ଗ ଘଞ୍ଚ ହଳଦିମିଶା ଓ ତା ଉପରେ ଛୋଟ ଛୋଟ କଳା ମୁଦିଆ ଦାଗମାନ ଥାଏ । ଦିନବେଳା କଲରା ପତ୍ରିଆ ବାଘ ଗୁହା, ଖୋଲ ବା ଗହଳିଆ ଗଛ ଭିତରେ ଲୁଚିରହେ । ସାଧାରଣତଃ ସେ ଏକୁଟିଆ ଶିକାର କରେ । ମାତ୍ର ବେଳେ ବେଳେ ଦୁଇଟି କଲରାପତ୍ରିଆ ବାଘ ଏକାଠି ମିଶି ଶିକାର ଅନ୍ୱେଷଣରେ ବାହାରନ୍ତି ।

ଏମାନେ ଅଧିକାଂଶ ଗଛ ଗହଳରେ କିମ୍ବା ପାଣି ପାଖରେ ଥିବା ପଥୁରିଆ ଖୋଲ ଭିତରେ ଲୁଚିରହି ଅତର୍କିତ ଭାବରେ ଶିକାର ଉପରେ ଲମ୍ଫ ଦିଅନ୍ତି । ଶିକାର ଅତି ବଡ଼ ହେଲେ ଯଦି ସେ ତାକୁ ପୂରା ଥରକେ ଖାଇ ନପାରେ ତା'ହେଲେ ବଳକା ଅଂଶକୁ ଗଧିଆ ମାନଙ୍କ ଠାରୁ ରକ୍ଷା କରିବା ପାଇଁ ଟାଣି ଟାଣି ଗୋଟିଏ ଗଛ ପାଖକୁ ନେଇ ଯାଏ । ହରିଣ, ଗୋରୁ, ମାଙ୍କଡ଼, ଠେକୁଆ, ମୂଷା, ଚଢ଼େଇ ଓ ସରୀସୃପ ଆଦି ଯେ କୌଣସି ଜୀବକୁ ସେ ମାରି ଖାଇପାରେ । ବାଘ ହେଉଛି ଚିତା ବା କଲରାପତ୍ରିଆର ପରମ ଶତ୍ରୁ । କାରଣ, ଦୁହେଁ ଏକା ପ୍ରକାର ଖାଦ୍ୟ ଲାଗି ପ୍ରତିଯୋଗିତା କରନ୍ତି । ବଣିଆ କୁକୁର ଓ ଗଧିଆ ମାନେ ସାହସର ସହିତ ଚିତା କିମ୍ବା କଲରାପତ୍ରିଆର ସାମନା କରିପାରନ୍ତି । ମାଈ କଲରାପତ୍ରିଆ ବାଘ ୨୨ ରୁ ୨୫ ଦିନ ଗର୍ଭବତୀ ରହିବା ପରେ ଥରକେ ଗୋଟିଏରୁ ଚାରୋଟି ପର୍ଯ୍ୟନ୍ତ ଛୁଆ ଦିଏ । ମାତ୍ର, ସାଧାରଣତଃ ଦୁଇଟି ଛୁଆ ହେବାର ଦେଖାଯାଏ । ଜନ୍ମ ହେବା ପରେ ଛୁଆମାନେ ଛଅମାସ ପର୍ଯ୍ୟନ୍ତ ମାଆ ସାଙ୍ଗରେ ରହନ୍ତି । କଲରାପତ୍ରିଆ ବାଘ ପ୍ରାୟ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିବାର ଜଣାଯାଏ ।

ଭାରତର ଅରଣ୍ୟ, ଝାଡ଼ଜଙ୍ଗଲ ଓ ସମତଳ ଅଞ୍ଚଳମାନଙ୍କରେ କଲରାପତ୍ରିଆ ବାଘ ଦେଖିବାକୁ ମିଳନ୍ତି ।

## ମେଘୁଆ ଚିତା

*Neofelis nebulosa* (Griffith)

ସାଧାରଣ ଚିତାବାଘ ତୁଳନାରେ ମେଘୁଆ ଚିତା ଆକୃତିରେ ସାନ ହେଲେ ମଧ ଏହାର ଲାଞ୍ଜ ଖୁବ୍ ବଡ଼ । ମାଟିଆ ମିଶା ବାଦାମି ରଙ୍ଗର ଛାପିଛାପିକା ଗାଢ଼ କିମ୍ବା କଳା ପଟାପଟା ଦାଗ ମଝିରେ



ଲୋମର ସମାବେଶ ମେଘୁଆ ରଙ୍ଗ ଦିଶୁଥିବାରୁ ଏହାର ଏପରି ନାମକରଣ ହୋଇଛି । ଏହାର ମୁଣ୍ଡସାରା କଳା ଟିପା ଚିହ୍ନ ଓ ମୁହଁରେ ଗୋଲ, ପଟାପଟା କଳା ଛିଟ ଦେଖାଯାଏ । ଗୋଡ଼ ଓ ପେଟ ତଳେ ବଡ଼ବଡ଼ ଅଣ୍ଡାକୃତି କଳା ଚିହ୍ନ ଏବଂ ଲମ୍ବ ଲାଙ୍ଗରେ ମୁଦି ପରି ପାଙ୍ଗଣିଆ ରଙ୍ଗର ଚିହ୍ନମାନ ରହିଥାଏ ।

ସିକିମ୍, ଅରୁଣାଚଳ ପ୍ରଦେଶ, ନାଗାଲାଣ୍ଡ, ଓ ଆସାମର ପୂର୍ବାଞ୍ଚଳରେ ଥିବା ଘଞ୍ଚ ଚିରହରିତ୍ ଜଙ୍ଗଲରେ ମେଘୁଆ ଚିତା ଦେଖା ଯାଆନ୍ତି । ଗଛ ଉପରେ ବାସ କରିବା ଓ ରାତିରେ ବୁଲି ଶିକାର ଖୋଜିବା ଏହାର ପ୍ରକୃତି । ମେଘୁଆ ଚିତାମାନେ ସାନସାନ ସ୍ତନ୍ୟପାୟୀ ପ୍ରାଣୀ, ଏପରିକି ଛେଳି ବା ହରିଣ ପରି ବଡ଼ବଡ଼ ତୃଣଭୋଜି ପ୍ରାଣୀ ଓ ପକ୍ଷୀମାନଙ୍କୁ ମାରି ଖାଆନ୍ତି ।

## ଚିତା ବିରାଡ଼ି

*Felis bengalensis* (Kerr)

ଚିତା ବିରାଡ଼ି, ଛୋଟ ଚିତାବାଘଟିଏ ପରି ଦିଶୁଥିବା ପୋଷା ବିରେଇ ଆକୃତିର ପ୍ରାଣୀ । ଏହା



ଅନ୍ୟାନ୍ୟ ଚିତ୍ତାକର୍ଷକ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ । ଏହି ବିରାଡ଼ିର ଗେରୁଆ ରଙ୍ଗର ଦାଗମାନ ଠିକ୍ ଚିତାବାଘ ପରି ଦିଶେ । ଭାରତର ସବୁ ଅଞ୍ଚଳରେ ଚିତାବିରାଡ଼ି ଦେଖିବାକୁ ମିଳନ୍ତି । ଜଙ୍ଗଲ ଓ ଜନଶୂନ୍ୟ ସ୍ଥାନମାନଙ୍କରେ ଏମାନେ ରହିବାକୁ ଭଲପାଆନ୍ତି । ଜନବସତିର ପାଖାପାଖି ଅଞ୍ଚଳରେ ଚିତାବିରାଡ଼ି ଲୁଚିଛପି ବେଳେବେଳେ କୁକୁଡ଼ା ଓ ଅନ୍ୟ ଗୃହପାଳିତ ପଶୁମାନଙ୍କୁ ଟେକି ନେଇ ଅଦୃଶ୍ୟ ହୋଇଯାଏ । ଏହା ସାଧାରଣତଃ ସାନସାନ ସ୍ତନ୍ୟପାୟୀ ପ୍ରାଣୀ ଓ ଚଢ଼େଇମାନଙ୍କୁ ଖାଇ ବଞ୍ଚେ ।

## ତୁଷାର ଚିତା

*Panthera uncia* (Schreber)

ଯଦିଓ ଭାରତର ବିଭିନ୍ନ ଅଞ୍ଚଳରେ ଥିବା ବାଘମାନେ ଅନ୍ୟାନ୍ୟ ମାଂସାଶୀ ପ୍ରାଣୀମାନଙ୍କ ତୁଳନାରେ ସେତେ ବିପଦଗ୍ରସ୍ତ ଅବସ୍ଥାରେ ନାହାନ୍ତି, କେତେ ଜାତିର ମାଂସାଶୀ ଜୀବ, ଯଥା- ତୁଷାର ଚିତା ଓ ମେଘୁଆ ଚିତାମାନେ ଏବେ ଅତିଶୟ ବିପନ୍ନ ଅବସ୍ଥାରେ ଅଛନ୍ତି । ସାଧାରଣ ଚିତାବାଘ ଠାରୁ ଆକୃତିରେ ଛୋଟ ହେଲେ ମଧ୍ୟ ଦେହର ଥିବା ଘଞ୍ଚ ଲମ୍ବ ଲୋମ ଯୋଗୁଁ ତୁଷାର ଚିତା ଖୁବ୍ ବଡ଼ ବା ଓଜନଦାର ଜନ୍ତୁ ପରି ଦିଶେ । ଏହାର ସୁନ୍ଦର ବହଳିଆ ନରମ ଲୋମର ରଙ୍ଗ ଦୁଧିଆ ଧଳା । ତା' ଉପରେ ଫିକାଳିଆ ଧୂସର ଫୁଲପରି ଛାପିଛାପିକା ଚିହ୍ନମାନ ତୁଷାରଧବଳ ପରିବେଶ ସହିତ ମିଶିଯାଏ । ହିମାଳୟ ପର୍ବତ ର 3000ରୁ 4000 ମିଟର ଉଚ୍ଚ ଅଞ୍ଚଳରେ ତୁଷାର୍ ଚିତା ଦେଖିବାକୁ ମିଳନ୍ତି । ଶୀତଋତୁରେ ଏହା 2000ମିଟର ପାଖାପାଖି ଉଚ୍ଚତା ବିଶିଷ୍ଟ ତଳୁଆ ଅଞ୍ଚଳକୁ ପଳାଇ ଆସେ । ଏହା ଠେକୁଆ, ପାହାଡ଼ିଆ ଛେଳି, ମେଣ୍ଢା, ଆଇବେକ୍ସ (Ibex) ମାର୍‌ଖୋର୍ (Markhor) ଓ ଏପରିକି ଚଢ଼େଇ ମାନଙ୍କୁ ବି ଶିକାର କରି ଖାଏ ।



**ସୁନା ପୁଷି**

*Felis Temmeenchetli*
(Vigors & Horsfield)

ପୂର୍ବଭାରତରେ ସିକିମ୍‌ଠାରୁ ଆସାମ ପର୍ଯ୍ୟନ୍ତ ଘଞ୍ଚ ଜଙ୍ଗଲ ମାନଙ୍କରେ ସୁନାପୁଷି ମାନେ ଦେଖିବାକୁ ମିଳନ୍ତି । ପୋଷା ବିରେଇ ଠାରୁ ଏମାନେ ବଡ଼ ଆକୃତିର ଓ ଦେହଟା କହରା ମିଶା ସୁନେଲି ରଙ୍ଗର । ତା ଛଡ଼ା ନାକର ଉପରିଭାଗରେ ଦୁଇ ଆଖି ତଳକୁ ଧଳା, ପଟା ଦାଗ ଦାଢ଼ରେ କଳାରଙ୍ଗର ଗାର ଦେଖି ଏହି ବିରାଡ଼ିକୁ ଅନ୍ୟମାନଙ୍କଠାରୁ ବାଛି ହୁଏ ।



**ପାଲସା ବିରାଡ଼ି**

*Felis manul* (Pallas)

ଏହି ବିରାଡ଼ିର ଆକୃତି ସାଧାରଣ ପୋଷା ବିରେଇ ଭଳି । ଲାଞ୍ଜ ବେଶ୍ ଲମ୍ବ ଓ ଘନ ଲୋମ ଯୁକ୍ତ । ଲୋମଶ ଲାଞ୍ଜଟି ଖୁବ୍ ମୋଟା ଦିଶେ ଓ ଲାଞ୍ଜସାରା ଗୋଲ ଗୋଲ କଳାରଙ୍ଗର ମୁଦି ମୂଳରୁ ଅଗ ପର୍ଯ୍ୟନ୍ତ ଛାଡ଼ିଛାଡ଼ି ରହିଥିବା ସାଙ୍ଗକୁ ଲାଞ୍ଜ ଅଗରେ ମୁଠାଏ କଳାରଙ୍ଗର ଲୋମ ଥାଏ । ଏହାର କାନଗୁଡ଼ିକ ଛୋଟ । ଦେହସାରା ନରମ ରୁପେଲି ଜସରା ବା ଈଷତ୍ ହଳଦିଆ ରଙ୍ଗର ଲୋମ ଭରି ରହିଥାଏ । ଉଭୟପଟ ଗାଲରେ ଦୁଇଟି ଲେଖାଏଁ କଳାଗାର ସହିତ ଶରୀରର ପଛଆଡ଼କୁ ଈଷତ୍



କଳାରଙ୍ଗର ପଟା ପଟା ଦାଗମାନ ଥାଏ । ଏହି ବିରାଡ଼ି ବୋବେଇଲା ବେଳେ ସାନ କୁକୁର ଭୁକିବା ଶବ୍ଦ ସହିତ ପେଚାର ହୁଙ୍କାର ମିଶିଗଲା ପରି ଶୁଭେ । ଜାମ୍ମୁ କାଶ୍ମୀର ଓ ଲଦାଖର ପାହାଡ଼ିଆ ଅଞ୍ଚଳରେ ଏ ଜାତିର ବିରାଡ଼ି ଦେଖାଯାଆନ୍ତି । ଏମାନେ ସାନସାନ ସ୍ତନ୍ୟପାୟୀ ପ୍ରାଣୀ ଓ ଚଢ଼େଇମାନଙ୍କୁ ଖାଇ ବଞ୍ଚନ୍ତି । ପାହାଡ଼ିଆ ବାସସ୍ଥଳୀରେ ଆତ୍ମଗୋପନ କରି ରହିବା ଲାଗି ଏହି ବିରାଡ଼ିକୁ ନିଜ ଦେହର ରଙ୍ଗ ଚମତ୍କାର ଭାବରେ ସାହାଯ୍ୟ କରେ ।

## ଭାରତୀୟ ମରୁ ବିରାଡ଼ି

*Felis silvestris ornata* (Gray)

ଭାରତୀୟ ମରୁ ବିରାଡ଼ି ଦେଖିବାକୁ ପୋଷା ବିଲେଇ ଆକୃତିର । ଏହାର ଫିକା ହଳଦିଆ ଦେହରେ କଳା କଳା ଦାଗମାନ ଥାଏ । ଏହାର ଲାଞ୍ଜର ଶେଷ ଅଧକରେ କଳା ମୁଦିଆ ଦାଗ ସହିତ ଦୁଇଟି ସମାନ୍ତରାଳ କଳାପଟି ଦାଗ ଥାଏ ।



ମରୁ ବିରାଡ଼ି ରାଜସ୍ଥାନ ଓ କଚ୍ଛର ସବୁଆଡ଼େ ଦେଖାଯାଏ । ଏହାଛଡ଼ା ମଧ-ଭାରତର ବିଭିନ୍ନ ଅଞ୍ଚଳରେ ଥିବା ବୁଦୁବୁଦିକିଆ ଜଙ୍ଗଲ ମାନଙ୍କରେ ଦେଖିବାକୁ ମିଳେ । ସୁନ୍ଦର ଚମଡ଼ା ପାଇଁ ବ୍ୟାପକ ଭାବରେ ଶିକାର କରାଯିବା ଦ୍ବାରା ଏହା ଦୁଷ୍ପ୍ରାପ୍ୟ ଓ ବିପନ୍ନ ହୋଇପଡ଼ିଛି ।

## ମାଛଖିଆ ବିରାଡ଼ି

*Felis viverrina* (Bennett)

ଚମଡ଼ା ଲାଗି ଉତ୍ପୀଡ଼ିତ ସାନ ସାନ ବିରାଡ଼ିମାନଙ୍କ ମଧ୍ୟରୁ ମାଛଖିଆ ବିରାଡ଼ି ଅନ୍ୟତମ । ପୋଷା ବିଲେଇ ଠାରୁ ଏହା ଆକାରରେ ସାମାନ୍ୟ ବଡ଼ । ଧୂସର ବାଦାମି ରଙ୍ଗର ଦେହରେ ଟୋପା ଟୋପା କଳା ଦାଗ ସାଙ୍ଗକୁ ଏହାର ସାନ ଲାଞ୍ଜଟିଏ ଅଛି । ଉଭୟ ଗାଲରେ ହଳେ ଲେଖାଏଁ କଳାପଟା ଦାଗ ଓ କପାଳରେ ଛଅରୁ ଆଠଟି କଳା ଗାର ଏହାକୁ ଅନ୍ୟ ବିରାଡ଼ିମାନଙ୍କ ଠାରୁ ପୃଥକ ଭାବେ ଚିହ୍ନାଇ ଦିଏ । ଆଙ୍ଗୁଠି ଗୁଡ଼ିକୁ ସଂଯୁକ୍ତ କରୁଥିବା ଚମଡ଼ା ହେଉଛି ଏହାର ଶାରୀରିକ ଗଠନର ବିଶେଷତ୍ୱ ।



ଏହା ସାହାଯ୍ୟରେ ମାଛରଙ୍କା ବିରାଡ଼ି ଶୁଖିଲାରେ ଥାଇ ପାଣି ଭିତରୁ ମାଛ ଛାଣି ନିଏ । ଆସାମ, ବଙ୍ଗଳାର ସୁନ୍ଦରବନ, ଓଡ଼ିଶାର ଚିଲିକା ହ୍ରଦ ଓ କେରଳ ଉପକୂଳସ୍ଥ ନଦୀ ଓ ଝରଣା କୂଳରେ ଥିବା ଜଙ୍ଗଲ ଏବଂ ଲୁଣା ଜଙ୍ଗଲର ସନ୍ତସନ୍ତିଆ ସ୍ଥାନମାନଙ୍କରେ ମାଛରଙ୍କା ବିରାଡ଼ି ମାନେ ବାସ କରନ୍ତି । ଚମଡ଼ା ଲୋଭରେ ଅନ୍ୟାୟ ଭାବରେ ବହୁସଂଖ୍ୟକ ମାଛରଙ୍କା ବିରାଡ଼ିଙ୍କୁ ମାରିଦିଆଯାଉଛି । ଲୋମଶ ପୋଷାକ (Fur coat) ତିଆରି କରିବାପାଇଁ 30 ରୁ 35 ଟି ପର୍ଯ୍ୟନ୍ତ ମାଛରଙ୍କା ବିରାଡ଼ିଙ୍କ ଚମଡ଼ା ଆବଶ୍ୟକ ହୁଏ । ତେଣୁ ଏହି ପ୍ରାଣୀ ବିପଦଗ୍ରସ୍ତ ହୋଇ ପଡ଼ିବାର ପ୍ରଧାନ କାରଣ ହେଉଛି ଚମଡ଼ା ବ୍ୟବସାୟ ।

### ମେଘୁଆ ଚିତା ବିରାଡ଼ି

*Felis marmorate charltoni*
(Gray)



ଥଣ୍ଡା ଜଳବାୟୁବିଶିଷ୍ଟ ଉହବିଆ ଜଙ୍ଗଲରେ ମେଘୁଆ ଚିତାବିରାଡ଼ି ମାନେ ବାସ କରନ୍ତି । ପୋଷା ବିଲେଇ ଠାରୁ ଆକୃତିରେ ଏହି ବିରାଡ଼ି ସାମାନ୍ୟ ବଡ଼ । ଏମାନଙ୍କର ଦେହର ରଙ୍ଗ ମେଘୁଆ ଚିତା ବାଘର ଅନୁରୂପ । ଲାଞ୍ଜ ଖୁବ୍ ଲମ୍ବ ଓ ଲୋମଶ । ସାଧାରଣତଃ ଏମାନଙ୍କ ଦେହର ରଙ୍ଗ ବାଦାମି ମିଶା ଧୂସରରୁ

ତୋଫା ରେଜୁଆ ଓ ଚର୍ହିରେ ଅବିନ୍ୟସ୍ତ ଭାବରେ ବଡ଼ବଡ଼ କଳା ଛାପିଛାପିକା ଚିହ୍ନ ଗୁଡ଼ା ଅଧିକେ ଲମ୍ବ ଭାବରେ ପଡ଼ିଥାଏ । ଏହା ଶଙ୍ଖ ମଲମଲ ପଥର (marble)ର ପ୍ରତିରୂପ ଆଣିଦିଏ ।

ସିକିମ୍, ଦାର୍ଜିଲିଂ, ନାଗାଲାଣ୍ଡ ଓ ଭାରତର ଉତ୍ତର ପୂର୍ବାଞ୍ଚଳର ଅନେକ ଭାଗରେ ଚିତା ବିରାଡ଼ି ଦେଖାଯାଥାନ୍ତି । ଏମାନେ ଚଢ଼େଇ ଓ ଛୋଟ ଛୋଟ ଜୀବ ମାନଙ୍କୁ ଖାଇ ବଞ୍ଚନ୍ତି ।

## ବଡ଼କାନିଆ ବିରାଡ଼ି

*Felis caracal schmitzi* (Matschie)



ପୋଷା ବିରେଇ ଠାରୁ କାରାକାଲ୍ ବା ବଡ଼କାନିଆ ବିରାଡ଼ି ଦେଖିବାକୁ ବଡ଼ । ଏହାର ଗୋଡ଼ଗୁଡ଼ିକ ଲମ୍ବ, ଲାଙ୍ଗୁ ଛୋଟ ଓ କାନଗୁଡ଼ିକ ତ୍ରିଭୁଜାକୃତି ହୋଇ ଅଗ ଆଡ଼କୁ ମୁନିଆ ହୋଇଥାଏ । କାନ ଅଗରେ ଗୋଛାଏ କଳା ବାଳ ଥାଏ । ଦେହର ରଙ୍ଗ ଧୂସର ଲାଲ୍ । ମାତ୍ର, ପେଟ ତଳଆଡ଼କୁ ହଳଦି ମିଶା ବାଦାମି କିମ୍ବା ଧଳା ରଙ୍ଗ ଦେଖାଯାଏ । ମଧ୍ୟଭାରତ କିମ୍ବା ଦେଶର ଉତ୍ତର ପଶ୍ଚିମାଞ୍ଚଳର ଶୁଷ୍କ ବା ଅର୍ଦ୍ଧଶୁଷ୍କ ଜଳବାୟୁରେ ଏହି ଜାତିର ପଶୁମାନେ ଦେଖାଯାଥାନ୍ତି । ସାଧାରଣତଃ ବୁଦିବୁଦିକିଆ ଜଙ୍ଗଲରେ ଏମାନେ ବୁଲାବୁଲି କରୁଥିବାର ଦେଖାଯାଏ । ଏମାନେ ଅତିଶୟ କ୍ଷିପ୍ର । ତେଣୁ ଅଳ୍ପ ଉଚ୍ଚରେ ଉଡ଼ିଯାଉଥିବା ଚଢ଼େଇମାନଙ୍କୁ ମଧ୍ୟ ଡେଇଁପଡ଼ି ଧରିନେଇ ପାରନ୍ତି । ବଡ଼କାନିଆ ବିରାଡ଼ି ଛୋଟ ଛୋଟ ଜନ୍ତୁ ଓ ପକ୍ଷୀମାନଙ୍କୁ ଖାଇ ବଞ୍ଚେ ।

## ଲିନ୍କ୍ସ ବା ହେଟା ବିରାଡ଼ି

*Felis lynx isabellina* (Blyth)

ଲିନ୍କ୍ସ ଏକ ଛୋଟ ଲାଙ୍ଗୁଯୁକ୍ତ ବଣୁଆ ବିରାଡ଼ି । ଏମାନେ ଘଞ୍ଚ ଜଙ୍ଗଲରେ ରହନ୍ତି । ଏମାନଙ୍କ ଗୋଡ଼ ଲମ୍ବା, ପନ୍ଝା ବଡ଼ ଓ ବରଫରେ ଚାଲିବାଲାଗି ମୋଟା ଚମଡ଼ାଦ୍ୱାରା ଆବୃତ ହୋଇଥାଏ । ଦେହର ରଙ୍ଗ ଫିକା ବାଦାମିରୁ ଧୂସର ବା ପାଉଁଶିଆ ହୋଇ ବେଳେ ବେଳେ ଚର୍ହିରେ ଗାଢ଼ ବାଦାମି ରଙ୍ଗର ଛାପିଛାପିକା ଦାଗମାନ ଦେଖାଯାଏ । ଏହି ଚିହ୍ନମାନ ବିଶେଷକରି ଜଙ୍ଘ ଓ ପେଟ ଦୁଇକଡ଼ରେ ଦେଖାଯାଏ ।

ହେଟାବିରାଡ଼ି ଏକ ଶକ୍ତିଶାଳୀ ବିରେଇ । ଉଚ୍ଚସ୍ଥାନମାନଙ୍କରେ ଥିବା ବୁଦିବୁଦିକିଆ



ଜଙ୍ଗଲ, ଘାସ ବଣ ବା ଦଳବଣ ମାନଙ୍କରେ ଏମାନେ ରହନ୍ତି । ଏହି ବିରାଡ଼ି ଗଛରେ ଚଢ଼ିପାରେ ଓ ପାଣିରେ ପହଁରି ପାରେ । ମାତ୍ର ଏହା ଭୂଇଁରେ ଶିକାର କରେ । ଛୋଟଛୋଟ ଜନ୍ତୁ, ଚଢ଼େଇ ଓ ବେଳେବେଳେ ମେଣ୍ଢା ବା ଛେଳିମାନଙ୍କୁ ଏହି ବିରାଡ଼ି ମାରି ଖାଇ ଦିଏ । ହେଟା ବିରାଡ଼ିମାନେ ଉତ୍ତର ଗୋଲାର୍ଦ୍ଧରେ ଥିବା ଉତ୍ତର ଆମେରିକାର କାନାଡ଼ା ଓ ଇଉରୋପର ଅଧିକାଂଶ ଦେଶରେ ଦେଖାଯାଆନ୍ତି । ଭାରତରେ କେବଳ ଜାମ୍ମୁ ଓ କାଶ୍ମୀର ଅଞ୍ଚଳରେ ଏ ଜାତିର ବିରାଡ଼ି ଦେଖିବାକୁ ମିଳନ୍ତି ।

ସାଧାରଣତଃ ହେଟାବିରାଡ଼ିମାନେ ଏକୁଟିଆ ହୋଇ ବୁଲିବାର ଦେଖାଯାଏ । ମାତ୍ର ଏମାନେ ମଧ ବେଳେବେଳେ ଦଳବଦ୍ଧ ହୋଇ ବୁଲିବା ଓ ଏକାଠି ଶିକାର କରିବା ଦେଖାଯାଏ । ଶୀତକାଳର ଶେଷ ଆଡ଼କୁ ଏମାନଙ୍କର ସଂଗମଋତୁ ଆସେ । ତଳେ ପଡ଼ିଥିବା ଶୁଖିଲା ପୋଲାଗଛ କିମ୍ବା ପୁରୁଣା ବୁଢ଼ାଗଛରୁ ବାହାରି ଥିବା ଥୁଣ୍ଟା ମୂଳରେ କୋରଡ଼ କରି ହେଟା ବିରାଡ଼ି ଛୁଆ ଦିଏ । ମାଈ ହେଟା ବିରାଡ଼ି ଥରକେ ଦୁଇରୁ ଚାରିଟା ପର୍ଯ୍ୟନ୍ତ ଛୁଆ ଦିଏ । ସୁନ୍ଦର ଲୋମ ପାଇଁ ଏମାନଙ୍କୁ ଶିକାର କରାଯିବା ଯୋଗୁଁ ଏ ଜାତିର ବିରାଡ଼ି ଭାରତରେ କ୍ୱଚିତ୍ ଦେଖିବାକୁ ମିଳୁଛି ।

## ଶ୍ୱାନ ପରିବାର (THE DOG FAMILY)

ହେଟାବାଘ, ବିଲୁଆ, କୋକିଶିଆଳି ଓ କୁକୁର ଆଦି ଉଭୟ ବନ୍ୟ ଓ ଗୃହପାଳିତ ପଶୁମାନେ "କାଣିଡ଼େ" (Canidae)ଭାବେ ନାମିତ ଶ୍ୱାନ ପରିବାରର ଅନ୍ତର୍ଭୁକ୍ତ । ଏମାନଙ୍କର ସୁଗଠିତ ମୁଣ୍ଡରେ ଠିଆ ହୋଇ ରହିଥିବା ବଡ଼ବଡ଼ କାନ ଥାଏ । ଥୋମଣିଟି ଲମ୍ବା ହୋଇ ଚୋଳିଆ, ଘଞ୍ଚ ଲୋମଯୁକ୍ତ ଲାଞ୍ଜ, ଗହିରିଆ ଛାତି, ସରୁ ଗୋଡ଼ ଓ ପନ୍ଝାରେ ପ୍ରତ୍ୟାକର୍ଷିତ ହୋଇ ନପାରିବା ଭଳି ସିଧା ନଖ ଥାଏ । ଏମାନଙ୍କ ଶାରୀରିକ ଗଠନ ଶିକାର କରିବା ପାଇଁ ଉପଯୁକ୍ତ । ଏକାତିର

ଢାବମାନଙ୍କ ମଧ୍ୟରୁ କେତେକ ପଚାସଢ଼ା ମାଂସ ବା ମଇଳା ଆବର୍ଜନା ଖାଇ ବଞ୍ଚିପାରୁଥିଲେ ହେଁ ଅଧିକାଂଶଙ୍କର ପେଶା ହେଉଛି ଶିକାର । ବାସସ୍ଥଳୀ ବିଧ୍ୱଂସନ ଓ ମାନବିକ ହସ୍ତକ୍ଷେପ ଯୋଗୁଁ ଏହି ଶ୍ୱାନ ପରିବାରର ବହୁ ବନ୍ୟ ସଦସ୍ୟଙ୍କ ସଂଖ୍ୟା ହ୍ରାସ ପାଇ ସେମାନେ ଦୁଷ୍ପ୍ରାପ୍ୟ ଓ ବିପନ୍ନ ହୋଇପଡ଼ିଛନ୍ତି ।

## ଗଧିଆ

*Canis lupus* (Linnaeus)

ଭାରତୀୟ ଗଧିଆ ଦେଖିବାକୁ ଠିକ୍ ଗୋଟିଏ ଆଲସେସିଆନ୍ କୁକୁର ଆକୃତିର । ଏହାର ଶରୀରର ରଙ୍ଗ ହଳଦି ମିଶା ଲାଲ୍ । ଏଥିସହିତ ବେଳେବେଳେ କଳାରଙ୍ଗ ମିଶା ଥାଏ । ଏହାର ମୁହଁ ଓ ଗୋଡ଼ଗୁଡ଼ିକ ଲୋହିତ ବର୍ଣ୍ଣ ଓ ପେଟର ରଙ୍ଗ ଧଳା । ଅନ୍ୟ ଲକ୍ଷଣ ଭିତରେ ଏହାର ବଡ଼ ଖପୁରି, ଲମ୍ବା ଓ ଶକ୍ତିଶାଳୀ ମାଢ଼ି ଏବଂ କପାଳ ଉଚ୍ଚା ହୋଇଥାଏ ।

ଭାରତରେ ଦେଖାଯାଉଥିବା ଗଧିଆ ପରିବାରର ମୁଖ୍ୟ ଦୁଇ ସଦସ୍ୟଙ୍କ ମଧ୍ୟରେ ଦୁଇଟି ଛୋଟ ଜନ୍ତୁ ଯଥା- ହିମାଳୟର ଲୋମଶ ଗଧିଆ, କାଶ୍ମୀରରେ ଓ ଭାରତୀୟ ଉପଦ୍ୱୀପର ଭାରତୀୟ ଗଧିଆ ବିଖ୍ୟାତ ।



ଗଧିଆ ଏକ ନିଶାଚର ପ୍ରାଣୀ । ଏହା ହରିଣ, ମେଣ୍ଢା, ଛେଳି, ଓ କୁକୁଡ଼ା ଆଦି ଶିକାର କରିଥାଏ । ଏକଦା ଭାରତର ସବୁ ଅଞ୍ଚଳରେ ଦେଖାଯାଉଥିବା ଏହି ଜାତିର ପ୍ରାଣୀମାନଙ୍କ ସଂଖ୍ୟା ଏବେ ଭୀଷଣ ଭାବରେ କମିଯାଇଛି । ମହାରାଷ୍ଟ୍ର, ଗୁଜୁରାଟ, କର୍ଣ୍ଣାଟକ, ରାଜସ୍ଥାନ, ବିହାର ଓ କିଛି ଅଞ୍ଚଳରେ ଏବେ ଛୋଟ ଛୋଟ ଦଳବିଶିଷ୍ଟ ଗଧିଆ ଦେଖାଯାଆନ୍ତି । ଏହି ସଂଘର୍ଷମୟ ପୃଥିବୀରେ ଦିନକୁ ଦିନ ଗଧିଆଙ୍କର ସ୍ଥିତି ବିପଦସଂକୁଳ ହୋଇ ପଡ଼ିଛି । ସମ୍ପୂର୍ଣ୍ଣ ଧ୍ୱଂସପାଇବା

ପ୍ରକ୍ରିୟାକୁ ରାମଣିଆଳ ମାନେ ଦୁଇପ୍ରକାର ପ୍ରତିରୋଧ କରିଥାଆନ୍ତି । କାରଣ, ସେମାନେ ବହୁରକମର ଖାଦ୍ୟ ଖାଇ ବଞ୍ଚିପାରନ୍ତି ଓ ସେମାନଙ୍କ ଅଧିକ ଶିଶୁ ଜନ୍ମ କରିବାର ଶକ୍ତି ଏ ଦିଗରେ ସାହାଯ୍ୟ କରେ । ମାଈ ରାମଣିଆଳ ଥରକେ ଛଅରୁ ଦଶଟି ପର୍ଯ୍ୟନ୍ତ ଛୁଆ ଜନ୍ମକରେ ଓ ସାବଧାନ ଭାବରେ ସେମାନଙ୍କୁ ପାଳନ କରେ । ରାମଣିଆଳମାନେ ଦଳୀୟ ମୁଖିଆର ନେତୃତ୍ୱରେ ସଂଘବଦ୍ଧ ଭାବରେ ଶିକାର କରନ୍ତି । ଖାପ ଖୁଆଇ ଚଳିବାର ପ୍ରବଳ ଶକ୍ତିଥିବା ସତ୍ତ୍ୱେ ଅଧିକାଂଶ କିସମର ରାମଣିଆଳ ଅତି ଗୁରୁତର ଭାବରେ ବିପଦାପନ୍ନ ହୋଇପଡ଼ିଛନ୍ତି । ରାମଣିଆଳମାନେ ପିଲାମାନଙ୍କୁ ଉଠାଇ ନେଇଯାଆନ୍ତି ବୋଲି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ହୋଇ ଜନବସତିର ଆଖପାଖରେ ରହୁଥିବା ଅଧିକାଂଶ ରାମଣିଆଳଙ୍କୁ ମାରି ଦିଆ ଯାଇଛି ।

### ଭାରତୀୟ କୋକିଶିଆଳି

*Vulpes bengalensis* (Shaw)

ଆଇମା' କାହାଣୀରେ କୋକିଶିଆଳିକୁ ଅଧିକାଂଶ କ୍ଷେତ୍ରରେ ଚାଲାକ ଚତୁର ଜୀବ ବୋଲି ବର୍ଣ୍ଣନା କରାଯାଏ । ଶତ୍ରୁକୁ ଠକିଦେଇ ଶିକାରକୁ ଗୋଡ଼େଇ ଧରିବାରେ ସେମାନେ ଅତି ଦକ୍ଷ । ଏମାନେ ନିଶାଚର ଜୀବ । ଦିନସାରା ଶୋଇରହି ରାତିହେଲେ ଯୋଡ଼ିଯୋଡ଼ି ହୋଇ କିମ୍ବା ଏକୁଟିଆ ଏମାନେ ଶିକାର ଖୋଜି ବାହାରନ୍ତି । ଏମାନେ ପରସ୍ପର ସହିତ ଶବ୍ଦ ଓ ଆଘ୍ରାଣର ଭାଷାରେ ଭାବ ବିନିମୟ କରିଥାଆନ୍ତି ।



ଭାରତୀୟ କୋକିଶିଆଳିମାନେ ମାଟିଆ ରଙ୍ଗର, ସରୁଗୋଡ଼, ତ୍ରିଭୁଜାକୃତି କାନ ଓ ସେମାନଙ୍କ ଲାଞ୍ଜ ଅଗରେ ମେଞ୍ଚାଏ କଳାରଙ୍ଗର ବାଳ ଥାଏ । ଭାରତର ଉତ୍ତରପଶ୍ଚିମ ସୀମାନ୍ତ ଅଞ୍ଚଳ ଛାଡ଼ି ବାକୀ ସବୁ ଅଞ୍ଚଳରେ ଏହି ପ୍ରାଣୀମାନେ ଦେଖାଯାଆନ୍ତି । ସାଧାରଣତଃ ଚାଷଜମି ଓ ପତିତ (Scrub land)ଜମିମାନଙ୍କରେ ଏମାନେ ବାସ କରନ୍ତି । ମୂଷା, କଙ୍କଡ଼ା, ସରୀସୃପ, ଭଳ ଓ ଫଳମୂଳ ଖାଇ କୋକିଶିଆଳି ବଞ୍ଚେ । ମାଂସ ଓ ଚମଡ଼ା ଲାଗି ଶିକାର ଓ ଚାଷଜମିରେ କୀଟନାଶକ ଔଷଧର ବହୁଳ ବ୍ୟବହାର ଯୋଗୁଁ ଏମାନଙ୍କର ସଂଖ୍ୟା ଶୀଘ୍ରଶୀଘ୍ର ହ୍ରାସପାଇଛି ।

## ଭାରତୀୟ ବଣିଆ କୁକୁର

*Cuon alpinus* (Pallas)

ଭାରତୀୟ ବଣିଆକୁକୁର ଦେଖିବାକୁ ସାଧାରଣ କୁକୁର ଭଳି । ଏମାନଙ୍କ ଦେହର ରଙ୍ଗ ନାଲି । ତଳିପେଟ ଆଡ଼କୁ ହଳଦିମିଶା ଧଳା ଦେଖାଯାଏ । ଏହାର ଲାଞ୍ଜ ଛୋଟ । ଲାଞ୍ଜ ଅଗରେ ମୋଟାଏ ମାଟିଆ କଳାରଙ୍ଗର ବାଳ ଥାଏ ।



ବଣିଆକୁକୁରମାନେ ଛୋଟ ଛୋଟ ଦଳରେ ନିଜ ପରିବାରର ଅନ୍ୟମାନଙ୍କ ସହ ବାସ କରନ୍ତି । ମାତ୍ର ବେଳେବେଳେ ଅନେକ ପରିବାରର ସଦସ୍ୟମାନେ ଏକାଠି ହୋଇ ବଡ଼ବଡ଼ ଜନ୍ତୁମାନଙ୍କୁ ଆକ୍ରମଣ କରନ୍ତି । ଏମାନେ ସମ୍ବର, ନୀଳଗାଈ, ହରିଣ, କୃଷ୍ଣସାର ଓ ଘୁଷୁରୀ ଆଦି ଶିକାର କରି ଖାଆନ୍ତି । ବଣିଆ କୁକୁରମାନେ ଦଳବଦ୍ଧ ହୋଇ ଗୟଳ, ଚିତାବାଘ ଓ ମହାବଳବାଘ ମାନଙ୍କୁ ମଧ ଆକ୍ରମଣ କରନ୍ତି ।

## ଭାଲୁମାନେ (BEARS)

ଭାରତରେ ବାସ କରୁଥିବା ମାଂସାଶୀ ବା ମାଂସ ଭୋଜୀ ପ୍ରାଣୀମାନଙ୍କ ମଧରେ ଭାଲୁ ହେଉଛି ଅନ୍ୟତମ । ଏହି ଭାଲୁ ପରିବାରର ଅନେକ ସାନସାନ ସଦସ୍ୟ ମଧ ଅଛନ୍ତି । ଯଥା :-ଗଛରେ ବାସ କରୁଥିବା ରେକୁନ୍(Raccon) । ସବୁ ଭାଲୁଙ୍କ ଦେହରେ ଲମ୍ବା ଲମ୍ବା ଗହଳ ଲୋମ ଓ ମୋଟା ହୋଇ ଛୋଟ ଲାଞ୍ଜ ଥାଏ । ଏମାନଙ୍କର କଙ୍କାଳ ମଧ ଖୁବ୍ ବଡ଼ ଆକୃତିର । ଗୋଡ଼ଗୁଡ଼ିକ ବେଶ୍ ଦମ୍ଭ ଓ ତହିଁରେ ମାଟି ଖୋଳିବା ପାଇଁ ତଥା ଶତ୍ରୁ ସହିତ ଯୁଦ୍ଧ କରିବା ପାଇଁ ଶକ୍ତିଶାଳୀ ନଖମାନ ଥାଏ । ଏହାର ତଳିପାଦ ଭୂଇଁରେ ପଡ଼ି ଠିକ୍ ମଣିଷର ପାଦଚିହ୍ନ ପରି ଦେଖାଯାଏ ।

ସାଧାରଣତଃ ଭାଲୁମାନେ ଧିର ଗତିରେ ଚାଲନ୍ତି । ତଥାପି, ସେମାନେ ଘୋଡ଼ାଭଳି ଟାପୁ ପକାଇ ଘଣ୍ଟାରେ 40କିଲୋମିଟର ବେଗରେ ଦୌଡ଼ିପାରନ୍ତି । ବଡ଼ ମାଟିଆ ଭାଲୁର ଚାଲି ଟିକିଏ ଭିନ୍ନରକମର । ସେ ପ୍ରଥମେ ଦେହର ଗୋଟିଏ ପାଖର ଦୁଇଗୋଡ଼ ଉଠାଇ ଆଗକୁ ନିଏ ଓ ତା'ପରେ ପାଖ ଗୋଡ଼ ଦୁଇଟି ଉଠାଏ । ମାଟିଆ ଭାଲୁ କେବେକେବେ ଚାଖ ଉଠାଣିରେ ମଧ ଦୁଇ କିଲୋମିଟର ପର୍ଯ୍ୟନ୍ତ କେଉଁଠି ନରହି ଦୌଡ଼ିଦୌଡ଼ି ଘୋଡ଼ା ପରି ଟାପୁ ପକାଇ ପଳାଇଯାଏ ।

ଭାଲୁମାନଙ୍କ ଉପସ୍ଥିତି ତଥାକଥିତ ଭାଲୁଗଛରୁ ଜଣାପଡ଼େ । ଭାଲୁମାନଙ୍କ ଚଲାରାସ୍ତା (Bear Trail)ପାଖରେ ଥିବା ଏଭଳି ଅଧିକାଂଶ ଗଛ ସବୁ ଦେଖାଯାଏ, ଯେଉଁ ଗଛଦେହରେ କି ଭାଲୁ ତାର ଦେହ ଘଷିଘଷି ମସୃଣ କରିଦେଇଥାଏ । ସେଭଳି ଗଛ ଶାଖାରେ ମଧ ପୁଳାଏ ପୁଳାଏ ଭାଲୁ ଲୋମ ଲାଗିଥାଏ । ଏସବୁ ଗଛର ଗଣ୍ଡିକୁ ଭାଲୁ ଠାଏଠାଏ ଆମ୍ପୁଡ଼ି ଖଣ୍ଡିଆ କରି ଦେଇଥାଏ । ଗଛର ଆମ୍ପୁଡ଼ା ଦାଗରୁ ବୋହୁଥିବା କ୍ଷୀରରେ ଏବଂ ଗଛ ବକଳରେ ଭାଲୁଲୋମ ଲାଗିଥାଏ । ବେଳେବେଳେ ଭାଲୁ ଗଛର ବକଳ ଚିରି କାଢ଼ିନେଇଯାଏ ଓ ମଞ୍ଜ ଘୋଡ଼େଇଥିବା ପଟାଖା କାଠର ଦାଗରେ କାମୁଡ଼ିଥିବା ଜାଗାରୁ ଭାଲୁର ଦାନ୍ତ ଚିହ୍ନ ଜଣାପଡ଼େ ।

ଖାଇବା ଚିହ୍ନରୁ ମଧ ଭାଲୁ ମାନଙ୍କର ଉପସ୍ଥିତି ଜଣାପଡ଼େ । ଗାଡ଼ୁଆ ଗୁଣ୍ଡୁଚିମୁଷା ମାନଙ୍କର ଗନ୍ତାଗାତ ଖୋଳାହୋଇଥିବା ଓ ଗଇଡ଼ୁଳା ତାଡ଼ି ତାଙ୍କୁ ଖାଇଥିବା ଚିହ୍ନ ଦେଖି ଭାଲୁ କେଉଁ ଶିକାର କରିଛି ଓ କେଉଁଠି ଖାଇଛି, ଜଣାପଡ଼ିଯାଏ । କାଠଗଣ୍ଡିକୁ ଲେଉଟାଇଥିବା କିମ୍ୱା ଖଣ୍ଡଖଣ୍ଡ କରାଯାଇଥିବା ଏବଂ ପଥର ଗଡ଼ାଗଡ଼ି କରିଥିବା ଚିହ୍ନ ଦେଖି ଭାଲୁ କାର ପିମ୍ପୁଡ଼ି ବା କାଠବିନ୍ଧା ପୋକ ଖୋଜିଛି ବୋଲି ଜଣାପଡ଼େ । ଜାଗାଏ ଜାଗାଏ ଛୋଟ ଗଛମାନ ଓପଡ଼ା ହୋଇଥିବା ଦେଖି ଭାଲୁ କନ୍ଦା ବା ମୂଳ ଖୋଳୁଥିବାର ବୁଝାଯାଏ । ମହୁଫେଣା ଥିବା ଗଛ ବା ଡ଼ାଳକୁ ଖଣ୍ଡଖଣ୍ଡ କରି ଚିରିଦେଇ ଭାଲୁ ମହୁ ଓ ମହୁଫେଣା ଖାଏ । ଖାଇସାରି ବଳକା ଖାଦ୍ୟାଂଶକୁ ସେ ମଇଳା ଆବର୍ଜନାରେ ଘୋଡ଼େଇ ଦିଏ । ତେଣୁ ଏଭଳି ଗୁପ୍ତ ସ୍ଥାନର ସନ୍ଧାନ ପାଇଲେ ପାଖାପାଖି ଅଞ୍ଚଳରେ ଭାଲୁ ରହୁଥିବାର ଜଣାପଡ଼େ ।

## ହିମାଳୟର ମାଟିଆ ଭାଲୁ

*Ursus arctos isabellinus* (Horsfield)

ଶୀତଦିନେ ହିମାଳୟର ମାଟିଆ ଭାଲୁମାନଙ୍କ ଦେହସାରା ଖୁବ୍ ବହଳିଆ ଲମ୍ୱା ବାଦାମୀ ରଙ୍ଗର ବାଳ ହୁଏ । ମାତ୍ର ଗ୍ରୀଷ୍ମ ଋତୁରେ ଏହା ଛୋଟ ହୋଇ ଗାଢ଼ ବାଦାମୀ ଦିଶେ । ଏହି ରଙ୍ଗରେ ଆଂଶିକ ପରିବର୍ତ୍ତନ ହୋଇ ବାଦାମୀ କହରା କିମ୍ୱା ରୁପେଲି ମାଟିଆ ଦେଖାଯାଏ । ହିମାଳୟ ପାର୍ବତ୍ୟାଞ୍ଚଳର ଉତ୍ତରପଶ୍ଚିମ ଭାଗ ଓ କେନ୍ଦ୍ରାଞ୍ଚଳରେ ଅଧିକ ଉଚ୍ଚତାରେ ଯେଉଁଠି ଗଛଗହଳି ସରିଯାଇ ବରଫ ପଡିବା ଆରମ୍ଭ ହୁଏ, ସେଇ ଅଞ୍ଚଳରେ ଏ ଜାତିର ଭାଲୁମାନେ ବାସ କରନ୍ତି । ଏମାନେ ବଣର ଫଳମୂଳ, ପୋକଜୋକ, ମୂଷା ଓ ବେଳେବେଳେ ବଡ଼ ଜନ୍ତୁମାନଙ୍କୁ ମାରି ଖାଆନ୍ତି ।

## ଦେଶୀ ଭାଲୁ

*Melursus ursinus* (Shaw)

ଦେଶୀ ଭାଲୁ ଦେହରେ ଲମ୍ବ, ଟାଆଁସିଆ କଳାରଙ୍ଗର ମସିଆ ବାଳ ଥାଏ । ତା'ଛାତିରେ ଇଂରାଜୀ "ଭି" ଆକୃତିର ଧଳା ଚିହ୍ନ ଥାଏ । ଚଉଡ଼ା ମୁହଁ ଓ ଲମ୍ବ ଥୋମଣି ଯୋଗୁଁ ଭାଲୁ ମୁହଁଟା ତ୍ରିଭୁଜାକୃତି ଦେଖାଯାଏ । ଚଉଡ଼ା ପାଦ ଅଗରେ ଲମ୍ବା ଲମ୍ବା ଧଳା ନଖ ଥିବା ଯୋଗୁଁ ରୋଡ଼ଗୁଡ଼ାକ ବଙ୍କା ଦିଶେ । ଦେଶୀ ଭାଲୁର ପାଦଚିହ୍ନ ଠିକ୍ ମଣିଷର ପାଦଚିହ୍ନ ପରି ଦିଶେ । ସାରା ଭାରତରେ ଜଳାଶୟ, ଝରଣା ବା ନଦୀପରି ଜଳ ନିକଟବର୍ତ୍ତୀ ପାହାଡ଼ିଆ ବା ଜଙ୍ଗଲ ଅଞ୍ଚଳରେ ଦେଶୀ ଭାଲୁମାନେ ବାସ କରନ୍ତି । ଏମାନେ ନିଶାଚର । ଫଳମୂଳ, ଫୁଲ, ମହୁ, କନ୍ଦା, ଉଈ, ଚଢ଼େଇ ଓ ଅଣ୍ଡା ଆଦି ଖାଇ ଏମାନେ ବଞ୍ଚନ୍ତି ।

## ଶାଳିଆପତନି (THE CIVETS)

ଶାଳିଆପତନି ଜାତିର ଜୀବମାନେ 'ଭିଭେରିଡ଼େ'(Viverridae)ପରିବାର ଅନ୍ତର୍ଭୁକ୍ତ । ବିରାଡ଼ିକୁ ସେମାନଙ୍କର ନିକଟତମ ପାରିବାରିକ ସଦସ୍ୟ ବୋଲି ବିଚାର କରାଯାଇ ପାରେ । ଶାଳିଆପତନିର ଦେହ ଲମ୍ବ, ରୋଡ଼ଗୁଡ଼ିକ ସାନ, ମୁଣ୍ଡ ଲମ୍ବା ଓ ଥୋମଣି ଗୋଜିଆ । ଏମାନଙ୍କର ଦୃଷ୍ଟି ଶକ୍ତି ଅତି ପ୍ରଖର । ଘ୍ରାଣ ଶକ୍ତି ଆହୁରି ଦକ୍ଷ ଓ ଶ୍ରୁତିଶକ୍ତି ପ୍ରବଳ । ଏମାନେ ପୁରା ମାଂସାଶୀ ନୁହନ୍ତି । ଉଦ୍ଭିଦ ଜାତ ପଦାର୍ଥ ମଧ୍ୟ ଏମାନେ ଖାଇଥାଆନ୍ତି ।

## ମାଲବାରୀ ଶାଳୀଆପତନି

*Viverra megaspila* (Blyth)

ମାଲବାରୀ ଶାଳିଆପତନି ଦେଖିବାକୁ ବଡ଼ ନେଉଳ ଆକୃତିର । ଏମାନଙ୍କ ଦେହର ରଙ୍ଗ ହଳଦିଆ । ପଛପାଖରେ ବଡ଼ବଡ଼ କଳା ଦାଗ ଥାଏ । ଲାଞ୍ଜ ମୂଳରୁ ଅଗପର୍ଯ୍ୟନ୍ତ ଛଅଟି କଳା ମୁଦିଆ ଚିହ୍ନ ଥାଏ । ବେକରେ ଗଳାବନ୍ଧ ପରି କେତେକ କଳା ଚିହ୍ନ ଅଛି । ଏହାର ରୋଡ଼-ଆଙ୍ଗୁଠି ସନ୍ଧିରେ ସଂଯୋଗକାରୀ ମଧ୍ୟବର୍ତ୍ତୀ ଚମଡ଼ା ଥାଏ । ଶାଳିଆପତନିର ପିଠି ଉପରେ ଥିବା ମୁକୁଟ ପରି ଠିଆଠିଆ କଳା ରଙ୍ଗର ଲୋମ କାନ୍ଧଉପରୁ ଲାଞ୍ଜ ଅଗ ପର୍ଯ୍ୟନ୍ତ ରହିଥିବାରୁ ଏହା ଅନ୍ୟ ପ୍ରାଣୀମାନଙ୍କ ଠାରୁ ବାରି ହୋଇ ପଡ଼େ । ଏମାନେ ଛୋଟ ଜନ୍ତୁଜୀବ ଓ ଚଢ଼େଇ ଧରି ଖାଆନ୍ତି ଓ କୁକୁଡ଼ାମାନଙ୍କ ଲାଗି ବିପଦ ସୃଷ୍ଟି କରନ୍ତି ।

ଏକଦା କେରଳ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବିଶେଷତଃ ମାଲବାର୍ ଅଞ୍ଚଳରେ ସାଧାରଣ ଭାବେ ଦେଖାଯାଉଥିବା ମାଲବାରୀ ଶାଳିଆପତନି ମାନେ ଏବେ ଦୁର୍ଲ୍ଲଭ ହୋଇପଡ଼ିଲେଣି ।

## ଚିତ୍ରିଆ ଶାଳିଆପତନି

*Prionodon pardicolor* (Hodgson)

ଚିତ୍ରିଆ ଶାଳିଆପତନିର  ଲମ୍ବ ଦେହସାରା ଛୋଟଛୋଟ ଫିକା ରଙ୍ଗର ଲୋମ ମଝିରେ କଳାଦାଗମାନ ଭରିରହିଥାଏ । ଏହା ଏକ ଚତୁର ଶିକାରୀ ଓ ଦକ୍ଷ ଚଢ଼ାଳି । ଏହାର ମୁଣ୍ଡ ଗୋଲିଆ, ଗୋଡ଼ ଛୋଟ ଓ ଲାଞ୍ଜଟି ସାନ । କଳା ଦାଗଗୁଡ଼ିକ ବେକଠାରୁ ଲାଞ୍ଜ ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ହୋଇ ଲମ୍ବା ଭାବରେ ରହିଥାଏ । ବେକ ଓ ଗୋଡ଼ ମୂଳରେ ଏହି ଦାଗ ପଟାପଟା କଳାଗାର ପରି ଦିଶେ ।



ଚିତଆ ଶାଳିଆପତନି ହିମାଳୟ ପାର୍ବତ୍ୟାଞ୍ଚଳର କେନ୍ଦ୍ର ଓ ପୂର୍ବପଟେ ଥିବା ପାହାଡ଼ିଆ ଜଙ୍ଗଲମାନଙ୍କରେ ଦେଖାଯାଆନ୍ତି । ଛୋଟଛୋଟ ଜୀବ, ଚଢ଼େଇ ଓ ପୋକଜୋକ ଖାଇ ଏମାନେ ବଞ୍ଚନ୍ତି । ଏହା ଭୂମି ଉପରେ ପେଟେଇପେଟେଇ ଲୁଚିଛପି ଶିକାର ଧରେ । ଦେଖିବାକୁ ସରୁ ହୋଇଥିବାରୁ ବେଳେବେଳେ ଏହାକୁ ଭୁଲ୍‌ରେ ଓଳନିଆ ବିଷାକ୍ତ ସାପ ବୋଲି ଧରି ନିଆଯାଏ ।

## ବିରାଡ଼ିଆ ଭାଲୁ

*Arctictis binturong*

(Raffles)



ବିରାଡ଼ିଆ ଭାଲୁ ବିରାଡ଼ି ପରିବାରର ଅନ୍ୟ ସଦସ୍ୟମାନଙ୍କ ଠାରୁ ଦେଖିବାକୁ ଭିନ୍ନ । ଏହାର ଦେହସାରା ଭାଲୁପରି ଲମ୍ବଲମ୍ବ ଟାଆଁସା ବାଳରେ ଭରିଥାଏ । ତେଣୁ ଏପରି ନାମକରଣ ହୋଇଛି । ସମୁଦ୍ର ପତନଠାରୁ 2000 ମିଟର ଉଚ୍ଚତା ପର୍ଯ୍ୟନ୍ତ ଘଞ୍ଚଜଙ୍ଗଲ ମଧ୍ୟରେ ଏହି ପ୍ରାଣୀ ବାସ କରେ । କଳାଲୋମ ଭିତରେ ପାଉଁଶିଆ

ଧଳାରଙ୍ଗର ଲୋମ ମିଶି ଧୂସରିଆ ଦିଶେ । ଏହାର ଛୋଟଛୋଟ କାନ ଆଗରୁ ଗୋଛାଏ ଲୋମ ଲମ୍ବା ହୋଇ ବାହାରିଥାଏ । ତୁଳନାତ୍ମକଭାବରେ ଏହାର ଦାନ୍ତଗୁଡ଼ିକ ସାନସାନ । ଗଛରେ ବାସ କରିବା ହେଉଛି ବିରାଡ଼ିଆ ଭାଲୁର ପ୍ରକୃତି । ନିଜର ଲୋମଶ ଲାଞ୍ଜକୁ ବିରାଡ଼ିଆ ଭାଲୁ ଗଛର ଶାଖାକୁ ଜାବୁଡ଼ିଧରିବା ପାଇଁ ଏକ ହାତ ପରି ବ୍ୟବହାର କରେ । ଏହା ଏକ ନିଶାଚର ପ୍ରାଣୀ । ଦିନସାରା ଗଛରେ ଥିବା କୋରଡ଼ମାନଙ୍କରେ ଗୁଡ଼େଇ ହୋଇ ଶୋଇଯାଏ । ଶୋଇଲାବେଳେ ଏହାର ମୁଣ୍ଡକୁ ଲୋମଶ ଲାଞ୍ଜ ଭିତରେ ଗୁଞ୍ଜି ଶୋଇପଡ଼େ । ଦରଖୋଲା ଓଠ ଦେଇ ବାୟୁ ନିଷ୍କାସିତ ହେଉଲାବେଳେ ଏହା ସୁ' ସୁ' ଶବ୍ଦ କରେ ।

ଆସାମ ଓ ସିକିମ୍‌ର ଜଙ୍ଗଲମାନଙ୍କରେ ବିରାଡ଼ିଆ ଭାଲୁମାନେ ଦେଖିବାକୁ ମିଳନ୍ତି । ଘଞ୍ଚ ଜଙ୍ଗଲରେ ଥିବା ବଡ଼ବଡ଼ ଗଛରେ ଛନ୍ଦାଛନ୍ଦି ଶାଖାଗୁଡ଼ିକ ଭିତରେ ଏହି ଭାଲୁ ଅତି ଦକ୍ଷ ଓ ଧୀରଭାବରେ ଗତିକରେ । ଛୋଟ ଛୋଟ ଜୀବଜନ୍ତୁ, ଚଢ଼େଇ, ମାଛ, ଛିଆ, କୀଟପତଙ୍ଗ ଓ ଫଳ ଆଦି ଖାଇ ଏହା ବଞ୍ଚେ ।

## ନାଲି ପାଣ୍ଡା

*Ailurus fulgens* (F. Cuvier)

ନାଲିପାଣ୍ଡା ବା ଛୋଟପାଣ୍ଡା ଏକ ନିଶାଚର ବୃକ୍ଷବାସୀ ଜୀବ । ଭାଲୁ ପରିବାର ସହିତ ସାମଞ୍ଜସ୍ୟ ଥିବା ଏହି ବିରାଡ଼ିଜାତୀୟ ପ୍ରାଣୀର ଲୋମଶ ଦେହଟି ଉଜ୍ଜ୍ୱଳ ପିଙ୍ଗଳ ବର୍ଣ୍ଣର ହୋଇଥାଏ । ଏହାର ମୁଣ୍ଡ ଗୋଲ ଓ ମୁହଁର ରଙ୍ଗ ଧଳା । ଡ଼ବାପରି କୋମଳ ଲୋମଶ ଲାଞ୍ଜରେ ଫିକା ଓ ଗାଢ଼ ବାଦାମୀ ଲାଲ୍ ରଙ୍ଗର ଦାଗମାନ ଥାଏ । ଏହି ଲାଞ୍ଜର ଅଗ କଳାରଙ୍ଗର ହୋଇଥାଏ । ନାଲିପାଣ୍ଡା ମାଟି ଉପରେ ଧୀରେ ଧୀରେ ଗତି କରେ । ମାତ୍ର, ଗଛ ଚଢ଼ିବାରେ ଏହା ଖୁବ୍ ଦକ୍ଷ । ହିମାଳୟ ପାର୍ବତ୍ୟାଞ୍ଚଳରେ ଥିବା ନେପାଳ, ସିକିମ୍, ଉତ୍ତରବ୍ରହ୍ମଦେଶ ଓ ଚୀନର ଦକ୍ଷିଣାଞ୍ଚଳରେ ନାଲିପାଣ୍ଡା ଦେଖିବାକୁ ମିଳନ୍ତି । ବାଉଁଶଗଜା, ଫଳମୂଳ, କୀଟପତଙ୍ଗ, ଚଢ଼େଇ ଅଣ୍ଡା ଓ ବେଳେବେଳେ ସାନସାନ ଜନ୍ତୁମାନଙ୍କୁ ଖାଇ ନାଲିପାଣ୍ଡାମାନେ ବଞ୍ଚନ୍ତି । ଆବଦ୍ଧ ବା ପିଞ୍ଜରାବଦ୍ଧ ଅବସ୍ଥାରେ ପାଉଁରୁଟି, ଦୁଧ, ଅଣ୍ଡା ଓ ଛୋଟ ଚଢ଼େଇ ମାନଙ୍କୁ ଖାଇ ଏମାନେ ବଞ୍ଚି ପାରନ୍ତି । ବିରାଡିପରି ଏହା ଗୁଡ଼ୁ ଗୁଡ଼ୁ ହୁଏ, ଭାଲୁପରି ଗୁଁ ଗୁଁ ଘୁମୁରେ ଓ ବେଳେବେଳେ କୁକୁର ପରି ଚାକୁଚାଁକୁ ଶବ୍ଦ କରେ । ସାଧାରଣତଃ ଏହା ଭାଲୁପରି ଥୋମଣି ବୁଡ଼େଇ ଶୋଷିକରି ପାଣିପିଏ । ବିରାଡ଼ି ତା ନଖକୁ ଚମ ଭିତରକୁ ଟାଣିନେଲାପରି କେତେକାଂଶରେ ନାଲିପାଣ୍ଡା ତା ନଖକୁ ଲୁଚେଇବାକୁ ମଧ ଚେଷ୍ଟା କରେ ।

## ବଜ୍ରକାପଟା

***Manis Crassicaudata*** **(Gray)**

ଦେହସାରା କାତି ଥିବା ପିମ୍ପୁଡିଖିଆ ବଜ୍ରକାପଟାମାନେ ଅତି ବିଚିତ୍ର ଜୀବ । ଅନ୍ୟ ସ୍ତନ୍ୟପାୟୀ

ପ୍ରାଣୀମାନଙ୍କ ତୁଳନାରେ ବଜ୍ରକାପ୍ତାର ଶାରୀରିକ ଗଠନ ଭିନ୍ନ । ଦେହସାରା ପରସ୍ପରକୁ ମାଡ଼ି ରହିଥିବା ବଡ଼ବଡ଼ କାତି ଗୁଡ଼ିକ ବଜ୍ରକାପତା ଦେହରେ ଧାଙ୍କୁ ଭଳି କାମ କରେ । ଏହା ଦେହର ଲୋମ ବା କେଶ ସବୁ ଚେପ୍‌ଟା ହୋଇ କାତିରେ ରୂପାନ୍ତରିତ ହୋଇଛି ବୋଲି ବିଚାର କରାଯାଏ । ପେଟତଳେ ମୋଟା ଟାଆଁସା ଲୋମଗୁଡ଼ିକ କାତି ସନ୍ଧିରେ ଦେଖାଯାଏ । ବଜ୍ରକାପ୍ତାର ଅନ୍ୟଏକ ଅଦ୍ଭୁତ କଥା ହେଉଛି, ତା'ଦେହର ଗୁଡ଼େଇ ହୋଇଯିବା କ୍ଷମତା । କୌଣସି ବାଧା ପାଇଲେ ଏହା ଗୁଡ଼େଇ ହୋଇ ଅସ୍ତ୍ର ସଜ୍ଜିତ ପେଣ୍ଡୁଟିଏ ପରି ଦିଶେ । ଏହାର ମାଂସପେଶୀ ଗୁଡ଼ିକ ଏତେ ଶକ୍ତ ଯେ, ଥରକେ ଗୁଡ଼େଇ ହୋଇଗଲେ ତାକୁ ଫିଟେଇବା କଷ୍ଟକର ହୋଇ ପଡ଼େ ।

ବଜ୍ରକାପ୍ତା ତା'ର ଆଗଗୋଡ଼ଠାରୁ ଲମ୍ବଲମ୍ବ ମୁଣ୍ଡା ନଖରେ ମାଟି ଖୋଳି ଉଈ ବା ପିମ୍ପୁଡ଼ି ମାନଙ୍କୁ ଖାଏ । ଏମାନେ ମାଟିରେ ଗାତ ଖୋଳି ରହନ୍ତି । ମାତ୍ର, ବେଶ ଦକ୍ଷତାର ସହିତ ଗଛରେ ଚଢ଼ି ବେଳେବେଳେ କାଇ ପିମ୍ପୁଡ଼ିମାନଙ୍କୁ ଖୋଜି ବୁଲନ୍ତି । ଲାଞ୍ଜଦ୍ୱାରା ଧରି ରଖିବାର ଶକ୍ତି ଏହାର ଅଛି । ତେଣୁ ଏହାର ଲାଞ୍ଜ ଗଛ ଚଢ଼ିଲାବେଳେ ଜାବୁଡ଼ି ଧରିବାରେ ସାହାଯ୍ୟ କରେ ।

ହିମାଳୟ ପାର୍ବତ୍ୟ ଅଞ୍ଚଳମାନଙ୍କର ନିମ୍ନ ଗଡ଼ାଣିଆ ତଥା ସମତଳ ଅଞ୍ଚଳମାନଙ୍କରେ ବଜ୍ରକାପ୍ତାମାନେ ଦେଖାଯାଆନ୍ତି । ଆସାମ ଓ ହିମାଳୟ ପୂର୍ବାଞ୍ଚଳରେ ଚୀନାବଜ୍ରକାପ୍ତା ନାମକ ଅନ୍ୟଏକ ଜାତିର ବଜ୍ରକାପ୍ତା ଦେଖାଯାଆନ୍ତି । ବାସସ୍ଥଳୀର ବିଧ୍ୱଂସନ, ତଥାକଥିତ ଔଷଧ ପାଇଁ ଏମାନଙ୍କୁ ଶିକାର କରାଯିବା ଦ୍ୱାରା ବଜ୍ରକାପ୍ତାମାନଙ୍କ ସଂଖ୍ୟା ଯଥେଷ୍ଟ କମିଗଲାଣି ।

## ତୃଣଭୋଜୀ ପ୍ରାଣୀ (HERBIVORE ANIMALS)

ଭାରତରେ ଥିବା ବହୁସଂଖ୍ୟକ ତୃଣଭୋଜୀ ପ୍ରାଣୀଙ୍କ ମଧ୍ୟରେ ହାତୀ, ଗଣ୍ଡା, ଚମରିଗାଈ, ମଇଁଷି ଓ ନାନା ଜାତିର ମୃଗ ଆଦି ଉଲ୍ଲେଖଯୋଗ୍ୟ । ବିଭିନ୍ନ ଆକାରପ୍ରକାରବିଶିଷ୍ଟ ଏହି ପ୍ରାଣୀମାନେ ବହୁବିଧ ତୃଣ, ଲତା, ପତ୍ର ଆଦି ଉଦ୍ଭିଦ ଖାଇ ନାନାଦି ଆବାସିକ ବାତାବରଣ ସହିତ ଖାପଖୁଆଇ ବଞ୍ଚିରହନ୍ତି । ବିଭିନ୍ନ ଉଦ୍ଭିଦରୁ ଜାତ ଖାଦ୍ୟ ଠିକ୍‌ଭାବରେ ଖାଇବା ଭଳି ସେମାନଙ୍କର ଦାନ୍ତ ରୂପାନ୍ତରିତ ହୋଇଛି, ଏବଂ ଅଭ୍ୟାସଗତ ଖାଦ୍ୟ ହଜମ କରିବା ଲାଗି ସେମାନଙ୍କର ହଜମ ପ୍ରଣାଳୀ ସ୍ୱତନ୍ତ୍ରଭାବେ ଗଠିତ ହୋଇଥିଛି ।

### ହାତୀ

*Elephas Maximus* (Linnaeus)

ସ୍ଥଳବାସୀ ଜୀବମାନଙ୍କ ମଧ୍ୟରେ ସବୁଠାରୁ ବୃହଦାକାର ହେଉଛି ହାତୀ । ଏହା କେବଳ ଆଫ୍ରିକା ଓ ଭାରତରେ ଦେଖାଯାଏ । ତେବେ, ଏହାଠାରୁ ବଡ଼ ତଥା ଜୀବଜଗତର ସବୁଠାରୁ ବୃହତ୍ତମ ପ୍ରାଣୀ ହେଉଛି ତିମି । ହାତୀର ପ୍ରଧାନ ଅଙ୍ଗ ହେଉଛି ତାର ଶୁଣ୍ଢ, ଯାହାକି ତା'ଉପର ଓଠର ଏକ

ସଂପ୍ରସାରଣ । ଏହି ଶୁଣ୍ଢ ହେଉଛି ଏକ ଶକ୍ତ ମାଂସପେଶୀଯୁକ୍ତ ଅଙ୍ଗ । ହାତୀର ପୂର୍ବପୁରୁଷ ମାନଙ୍କ ଠାରେ ଥିବା ଘୁଷୁରୀ ଥୋମଣି ଠାରୁ ଆହୁରି ଲମ୍ବା ଥୋମଣିଟା ବଢ଼ିବଢ଼ି ଜିନିଷପତ୍ର ଧରିଲା ଭଳି ଏକ ଲମ୍ବା ଶୁଣ୍ଢରେ ପରିଣତ ହୋଇଛି । ଏହି ଶୁଣ୍ଢକୁ ଦକ୍ଷତାର ସହିତ ଚାଳନା କଲାଭଳି ଆବଶ୍ୟକୀୟ ଶକ୍ତିଶାଳୀ ମାଂସପେଶୀ ରହିଛି । ଅନ୍ୟପଶୁମାନଙ୍କ ମୁହଁରେ ଥିବା ଯେଉଁ ମାଂସପେଶୀ ନାକର ପାଖ ଅଂଶକୁ ପରିଚାଳନା କରନ୍ତି, ସେହି ଅଙ୍ଗରୁ ଏ ମାଂସପେଶୀ ମଧ ଉଦ୍‌ଭୂତ ହୋଇଛି । ଏହା ଫଳରେ ଆଧୁନିକ ହାତୀର ଶୁଣ୍ଢ କେବଳ ଭୂମି ସ୍ପର୍ଶ କରେନାହିଁ, ମାତ୍ର ତାହା ପଛ ଆଡ଼କୁ, ଦୁଇପାଖକୁ ଓ ଉପରକୁ ନେଇ ହୁଏ । ହାତୀ ତାର ଶୁଣ୍ଢଦ୍ୱାରା ଅନେକ କାମ କରେ । ଏହି ଅଙ୍ଗ ସାହାଯ୍ୟରେ ସେ ପାଣି ଟାଣେ । ମାତ୍ର ଶୁଣ୍ଢ ଦେଇ ସେ ପାଣି ପିଏ ବୋଲି ଯେଉଁଭଳି ବିଶ୍ୱାସ କରାଯାଏ, ତାହା ଠିକ୍ ନୁହେଁ । ପ୍ରକୃତରେ ଶୁଣ୍ଢ ଭିତରକୁ ପାଣି ଟାଣି ହୋଇ ଆସେ, ତାପରେ ହାତୀ ପାଟି ଭିତରକୁ ତାହା ଅଜାଡ଼ି ଦିଏ । ପାଟିକୁ ଖାଦ୍ୟ ନେବା ଲାଗି ମଧ ଶୁଣ୍ଢ ବ୍ୟବହୃତ ହୁଏ । ଏହି ଆବଶ୍ୟକୀୟ ଅଙ୍ଗ ସାହାଯ୍ୟରେ ହାତୀ ମାଟି ଉପରେ ଥିବା ଉଦ୍ଭିଦ ଓ ମୁଣ୍ଡ ଉପରେ ଥିବା ଗଛର ପତ୍ର ଖାଇପାରେ । ଗଛର ଉର୍ଦ୍ଧ୍ୱଭାଗରେ ଥିବା କଅଁଳିଆ ପତ୍ର ହେଉଛି ଏହି ଏହି ବିଶାଳ ଜନ୍ତୁର ପ୍ରିୟ ଖାଦ୍ୟ । ବେଳେବେଳେ ସାନସାନ କଅଁଳ ଡାଳ ଗୁଡ଼ିକ ହାତୀର ଶୁଣ୍ଢ ପହଞ୍ଚିପାରୁଥିବା ଦୂରତାରୁ ଆହୁରି ଉପରେ ଥାଏ । ଏପରି କ୍ଷେତ୍ରରେ ହାତୀ ତା ଖାଦ୍ୟ ସମସ୍ୟାକୁ ଖୁବ୍ ସରଳ ଭାବରେ ସମାଧାନ କରିନିଏ । ଲଢୁଆ ମେଣ୍ଢା (ଗାରଡ଼) ଭଳି ସେ ତା'ମୁଣ୍ଡ ଦ୍ୱାରା ଗଛକୁ ଠେଲିପକାଇ ଦେଇ କଅଁଳ ପତ୍ର ଖାଏ । ହାତୀର ଶୁଣ୍ଢଟି ଏକ ଶକ୍ତିଶାଳୀ ପଞ୍ଚମ ଗୋଡ଼ପରି କାର୍ଯ୍ୟ କରେ । ଏହା ସାହାଯ୍ୟରେ ସେ 400-500କିଲୋଗ୍ରାମ ଓଜନର ଜିନିଷ ଉଠାଇବାର ଜଣାଯାଏ । ତେବେ, ଶୁଣ୍ଢଦ୍ୱାରା ଅତି ଭଟକୁ ସେ ବୋଝ ଉଠାଏ ନାହିଁ । ଅତି ଓଜନିଆ କାଠଗୁଡ଼ିକୁ ଶୁଣ୍ଢ ସାହାଯ୍ୟରେ ହାତୀ ତାର ଦୁଇ ଦାନ୍ତ ଉପରେ ସ୍ଥିର କରି ରଖି ତା'ପରେ ଶୁଣ୍ଢଦ୍ୱାରା ଚାବୁଡ଼ି ଧରିନିଏ ।

ହାତୀର ଶୁଣ୍ଢ ଅତି ଶକ୍ତ । ମାତ୍ର, ଏହା ଅତି ସୂକ୍ଷ୍ମ କାର୍ଯ୍ୟ ମଧ କରିପାରେ । ଏହି ଶୁଣ୍ଢର ଅଗ୍ରଭାଗରେ ଗୋଟିଏ ପୁଡ଼ା ଥାଏ, ଯାହାକୁ ହାତୀ ଅତି ଦକ୍ଷତାର ସହିତ ବ୍ୟବହାର କରିପାରେ । ଏହି ମାଂସଳ ପୁଡ଼ା ଅତି ପ୍ରଖର ସ୍ପର୍ଶ-ଶକ୍ତିସମ୍ପନ୍ନ ଅଙ୍ଗ । ଏହା ସାହାଯ୍ୟରେ ଶୁଣ୍ଢଟି ହାତୀର ଘ୍ରାଣେନ୍ଦ୍ରିୟର କାର୍ଯ୍ୟ କରେ । ଯାହାସବୁ ଘଟିଯାଉଛି, ସେ ସବୁର ସମ୍ପର୍କ ରଖିବା ଲାଗି ହାତୀ ଏହି ଘ୍ରାଣେନ୍ଦ୍ରିୟ ଉପରେ ନିର୍ଭର କରେ । ଏହା ହିଁ ପଶୁଜଗତର ଅତି ଗହନ କଥା । ବାୟୁକୁ ଶୁଙ୍ଘିବାରେ ଓ ଅତି ନିକଟରେ ଥିବା ଜିନିଷମାନଙ୍କୁ ପରୀକ୍ଷା କରିବା ଲାଗି ହାତୀର ଶୁଣ୍ଢଟି ପ୍ରାୟ ସବୁବେଳେ ହଲୁଥିବାର ଦେଖାଯାଏ ।

ହାତୀମାନେ ବାରବୁଲା ଜନ୍ତୁ । ଗୋଟିଏ ଗୋଟିଏ ପଲରେ ଡ଼ଜନ ଡ଼ଜନ ବା ତାଠାରୁ ଅଧିକ ହାତୀ ଅଧିକାଂଶ ସମୟରେ ଏକ ବୁଢ଼ୀ ହାତୀର ପରିଚାଳନାଧୀନ ହୋଇ ବୁଲନ୍ତି । ହାତୀ ଏକ ସଂପୂର୍ଣ୍ଣ ଶାକାହାରୀ ଜୀବ । ସବୁଜ ଖାଦ୍ୟ ଅନ୍ୱେଷଣରେ ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ହାତୀଦଳ ଘୂରିବୁଲୁଥାଏ । ଗୋଟିଏ ଧାଡ଼ିରେ ହାତୀମାନେ ଘଣ୍ଟାକୁ ପ୍ରାୟ ଦଶ କିଲୋମିଟର

ରଡିରେ ପାହୁଣ୍ଡ ପକାଇ ଚାଲନ୍ତି ।

ବର୍ଷର କେତେକ ସମୟରେ ଆଫ୍ରିକା ହାତୀ ଓ ଏସିଆର ଅଣ୍ଡିରା ହାତୀମାନେ ଉତ୍ତେଜିତ ଅବସ୍ଥାରେ ରହନ୍ତି । ଏହି ଅବସ୍ଥାକୁ 'ମସ୍ତ' (MUSTH)ବୋଲି ନାମିତ କରାଯାଇଛି । ଏ ସମୟରେ ସେମାନଙ୍କ ଆଖିପତା ପାଖରେ ଥିବା ଗ୍ରନ୍ଥିରୁ ଏକ ପ୍ରକାର ଗନ୍ଧଯୁକ୍ତ ତରଳ ପଦାର୍ଥ ବହେ । ଏହି 'ମସ୍ତ'ର ପ୍ରକୃତ ଅର୍ଥ ଜଣାପଡ଼େ ନାହିଁ । ତେବେ, ଏହା କୌଣସି ଇନ୍ଦ୍ରିୟଗତ କାର୍ଯ୍ୟ ହୋଇଥିବାର ମନେ ହୁଏ । ଅନ୍ୟ ସମୟ ଅପେକ୍ଷା 'ମସ୍ତ'ସମୟରେ ଅଧିକାଂଶ ହାତୀଙ୍କର ସଂଗମ ହୁଏ । ମାତ୍ର, ଯେକୌଣସି ସମୟରେ ସେମାନଙ୍କର ସଂଗମ ହୋଇପାରେ । ହାତୀର ଗର୍ଭଧାରଣ ସମୟ ପ୍ରାୟ 21 ମାସ ହୋଇଥାଏ । ପ୍ରତିଥର ମାଈ ହାତୀ ଗୋଟିଏ ଛୁଆ ଜନ୍ମ କରେ । ଜନ୍ମ କରିବା ସମୟରେ ବା ତା'ଆଗରୁ ଅନେକ ସମୟରେ ଅନ୍ୟ ହାତୀମାନେ ମାଆ ହାତୀକୁ ସାହାଯ୍ୟ କରନ୍ତି । ବର୍ମାର ଲୋକମାନେ ଏଇ ସାହାଯ୍ୟକାରୀ ମାଈ ହାତୀକୁ 'ମାଉସୀ ହାତୀ' ବୋଲି କହନ୍ତି । ସଦ୍ୟଜାତ ଛୁଆ ହାତୀର ଉଚ୍ଚତା ପ୍ରାୟ ଏକମିଟର ଏବଂ ଓଜନ ପ୍ରାୟ 100କିଲୋଗ୍ରାମ୍ ହୋଇଥାଏ । ଏହାର ଦେହସାରା ଲୋମ ଭର୍ତ୍ତି ହୋଇଥାଏ । ମାଆର ଆଗଗୋଡ଼ ସନ୍ଧିରେ ଥିବା ଦୁଇଟି ମାତ୍ର ସ୍ତନରୁ ହାତୀଛୁଆ କ୍ଷୀର ପିଏ । ଆଫ୍ରିକାର ହାତୀମାନେ ଭାରତୀୟ ହାତୀମାନଙ୍କ ଠାରୁ ସାମାନ୍ୟ ଡେଙ୍ଗା ଓ ଓଜନିଆ । ସେମାନଙ୍କ କାନର ଆକୃତି ମଧ୍ୟ ବଡ଼ । ଭାରତୀୟ ଅଣ୍ଡିରା ହାତୀ ମାନଙ୍କର ଦାନ୍ତ କେବଳ ଖୁବ୍ ବଡ ହୁଏ । ଏହି ଦାନ୍ତକୁ ସେମାନେ ଅସ୍ତ୍ରଭଳି ବ୍ୟବହାର କରନ୍ତି ।

ହାତୀମାନେ ଘାସପତ୍ର, ଗୁଳ୍ମ ଚେର ଓ ଛୋଟ ଛୋଟ ଡାଳ ଖାଆନ୍ତି । ଭାରତୀୟ ହାତୀମାନେ ସାଧାରଣତଃ ବାଉଁଶ ଓ ଡେଙ୍ଗାଡେଙ୍ଗା ଘାସବହୁଳ ପାହାଡିଆ ଅଞ୍ଚଳରେ ରହନ୍ତି । ଗୋଟିଏ ବୟସ୍କ ହାତୀ ଦିନକୁ ପ୍ରାୟ 150 କିଲୋଗ୍ରାମ ପର୍ଯ୍ୟନ୍ତ ଖାଦ୍ୟ ଖାଇପାରେ । ଏହାର ଉଚ୍ଚତା 8 ରୁ 10 ଫୁଟ ଓ ହାରାହାରି ଓଜନ ପ୍ରାୟ 5ଟନ୍ (4700 କି:ଗ୍ରା:) ପର୍ଯ୍ୟନ୍ତ ହୋଇଥାଏ ।

ହଜାର ହଜାର ବର୍ଷ ଧରି କାଠବୁହା କାମ ପାଇଁ ମଣିଷ ହାତୀମାନଙ୍କୁ ବ୍ୟବହାର କରିଆସୁଛି । କେତେ ହାତୀଙ୍କୁ ସର୍କସରେ ଭାଗ ନେବାଲାଗି ମଧ୍ୟ ତାଲିମ ଦିଆଯାଏ । ହାତୀଦାନ୍ତ ଲୋଭରେ ବେଆଇନ୍ ଶିକାର ଯୋଗୁଁ ଭାରତୀୟ ହାତୀମାନଙ୍କ ସଂଖ୍ୟା କମିଯାଉଛି । ଏବେ ସେମାନଙ୍କୁ କେରଳ, କର୍ଣ୍ଣାଟକ, ଓଡ଼ିଶା, ବିହାର, ଉତ୍ତରପ୍ରଦେଶ, ପଶ୍ଚିମବଙ୍ଗ ଓ ଆସାମର ଅଭୟାରଣ୍ୟ ତଥା ଜାତୀୟ ପାର୍କମାନଙ୍କରେ ଆଶ୍ରୟ ଦିଆଯାଉଛି । ହାତୀ ସଂରକ୍ଷଣ ଲାଗି ଏକ ବିଶେଷ ପରିକଳ୍ପନା 'ପ୍ରୋଜେକ୍ଟ ଏଲିଫ୍ୟାଣ୍ଟ' ଏବେ ବିଚାରାଧୀନ ଅଛି ।

## ବୃହତ୍ ଏକଶିଂଘା ଗଣ୍ଡା

*Rhinoceros unicornis* (Linnaeus)

ପୃଥିବୀରେ ବର୍ତ୍ତମାନ ଦେଖାଯାଉଥିବା ପାଞ୍ଚ ଜାତିର ଗଣ୍ଡା ଭିତରୁ ଭାରତ ଓ ନେପାଳରେ ଦେଖାଯାଉଥିବା ବୃହତ୍ ଏକଶିଂଘା ଗଣ୍ଡା ଏବେ ସବୁଠାରୁ ବିପଦ ଗ୍ରସ୍ତ ଅବସ୍ଥାରେ ଅଛି । ଆଫ୍ରିକାର



କଳା ଓ ଧଳା ଗଣ୍ଡା, ସୁମାତ୍ରା ଦେଶୀୟ ଗଣ୍ଡା ଓ ଛୋଟଛୋଟ ଏକସିଂଘା ଗଣ୍ଡା ବା ଜାଭା ଦେଶୀୟ ଗଣ୍ଡା ହେଉଛନ୍ତି ବଞ୍ଚି ରହିଥିବା ଗଣ୍ଡାମାନଙ୍କ ମଧ୍ୟରେ ଅନ୍ୟତମ । ସ୍ଥଳବାସୀ ବୃହଦାକାର ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ହାତୀ ପଛକୁ ଏକଶିଂଘା ଗଣ୍ଡା ହେଉଛି ଦ୍ୱିତୀୟ ବୃହଦାକାର ଜୀବ । କାନ୍ଧ ପାଖରେ ଏହାର ଉଚ୍ଚତା ୬ ଫୁଟ ଓ ଦେହର ଲମ୍ବ 12ଫୁଟ ପର୍ଯ୍ୟନ୍ତ ହୁଏ । ହାରାହାରି ଓଜନ 2ଟନ୍ ପାଏଁ ହୋଇଥାଏ । କଳାମିଶା ମାଟିଆ ରଙ୍ଗର ଚମଡ଼ାରେ ମୋଟା ଭାଙ୍ଗମାନ ପଡ଼ି ସାଞ୍ଜୁ-ପଟା ଭଳି ଦିଶେ ଓ କାନ୍ଧ, ଜଂଘ ଏବଂ ପିଚା ପାଖରେ ଏହି ମୋଟା ଚମଡାରେ ଫୋଟୋକିମାନ ଭରି ରହିଥାଏ ।

ଉଭୟ ଅଣିରା ଓ ମାଳୁ ଗଣ୍ଡାଙ୍କର ନାକ ପାଖରେ ଥିବା ଚମଡ଼ାରୁ ଗୋଟିଏ ଶିଙ୍ଗ ବାହାରେ, ଯାହାର ଲମ୍ବ 2ଫୁଟ ହୋଇଥାଏ । ଲୋମ କିମ୍ବା ବାଳର ଏକ ରୂପାନ୍ତର ଓ ନଖ ଭଳି କେରାଟିନ୍ ଜାତୀୟ ଜୈବତନ୍ତୁରେ ଏ ଶିଙ୍ଗ ଗଠିତ ହୋଇଛି । ଏହାର ଔଷଧୀୟ ଇନ୍ଦ୍ରିୟ-ଉତ୍ତେଜକ ଗୁଣ ଥିବାର ସାଧାରଣ ବିଶ୍ୱାସ, ତାହା କିନ୍ତୁ ଠିକ୍ ନୁହେଁ । ଏହି ଅନ୍ଧ ବିଶ୍ୱାସ ଯୋଗୁଁ ଗଣ୍ଡା ଶିଙ୍ଗ ପାଇବା ଲୋଭରେ ଯେଉଁଭଳି ପ୍ରବଳ ଶିକାର ଚାଲିଛି, ତଦ୍ୱାରା ଏମାନଙ୍କର ସଂଖ୍ୟା ଖୁବ୍ ଜୋରରେ କମିଯାଉଛି ।

ଭାରତୀୟ ଗଣ୍ଡା, ଯେଉଁମାନଙ୍କୁ ଏକଦା ସିନ୍ଧୁ ଉପତ୍ୟକା ଠାରୁ ଉତ୍ତରବ୍ରହ୍ମଦେଶ ପର୍ଯ୍ୟନ୍ତ ସବୁଆଡେ ଦେଖିବାକୁ ମିଳୁଥିଲା, ସେମାନେ ବର୍ତ୍ତମାନ ଆସାମର ବ୍ରହ୍ମପୁତ୍ର ଉପତ୍ୟକା, ପଶ୍ଚିମବଙ୍ଗର ଦୁଇଟି ଛୋଟ ସଂରକ୍ଷିତ ଜଙ୍ଗଲ ଓ ନେପାଳର ତରାଇ ଅଞ୍ଚଳରେ ଥିବା ଚିତାଓ୍ୱନ ଉପତ୍ୟକାରେ କେବଳ ଅଛନ୍ତି । ଏବେ ବଞ୍ଚି ରହିଥିବା 1950ରୁ କିଛି ଅଧିକ ଗଣ୍ଡାଙ୍କ ଭିତରୁ କାଜିରଙ୍ଗା ଜାତୀୟ ଉଦ୍ୟାନରେ ପ୍ରାୟ 1250 ଓ ନେପାଳରେ ପ୍ରାୟ 400 ଗଣ୍ଡା ଅଛନ୍ତି । ଗଣ୍ଡାମାନେ ନିଃସଙ୍ଗ ପ୍ରକୃତିର ଜୀବ । ଅଧିକାଂଶ ସମୟ ସେମାନେ ପାଣିରେ ପଡିବାକୁ ଭଲ ପାଆନ୍ତି ଓ ତହିଁରୁ ଜଳଜ ଉଦ୍ଭିଦ, ଘାସ, ଓ ଗୁଳ୍ମ ଆଦି ପ୍ରଚୁର ପରିମାଣରେ ଖାଇ ବଞ୍ଚନ୍ତି ।

ଜଙ୍ଗଲ କଟାହୋଇ ସେମାନଙ୍କ ବାସସ୍ଥଳୀ ଧ୍ୱଂସ ହେବା, ବହୁତ ଗୋରୁ ପଲ ବା ଗୃହପାଳିତ ମଇଁଷି ପଲ ସେମାନଙ୍କ ଚରାଭୂଇଁରେ ପଶିବା ଓ ଶିଙ୍ଗ ଲାଗି ସେମାନଙ୍କୁ ଶିକାର କରାଯିବା ଆଦି ଗଣ୍ଡାମାନଙ୍କ ସଂଖ୍ୟା ହ୍ରାସ ପାଇବାର ପ୍ରଧାନ କାରଣ । ସେମାନଙ୍କ ସଂରକ୍ଷଣ ଦିଗରେ କଠୋର ପଦକ୍ଷେପ ନିଆଯାଇ ଯେଉଁସବୁ ଅଞ୍ଚଳରେ ସେମାନେ ବାସ କରୁଥିଲେ, ସେଠାରେ ସେମାନଙ୍କୁ ପୁଣିଥରେ ରଖାଯିବା ଫଳରେ ସେମାନଙ୍କର ସଂରକ୍ଷଣ ସପକ୍ଷରେ ଆଶାର ସଂଚାର ହୋଇଛି । (ବୁଧ୍ୱା ଜାତୀୟ ଉଦ୍ୟାନରେ ଏବେ ସେମାନେ ପୁଣିଥରେ ଠିକ୍‌ଭାବେ ରଖାଯାଇ ବଞ୍ଚି ରହିଛନ୍ତି ।)

### ଏସୀୟ ଜଙ୍ଗଲି ଗଧ

*Asinus Hemionus Khur* (Lesson)

ଏସୀୟ ଜଙ୍ଗଲୀ ଗଧ ଦେଖିବାକୁ ଘୋଡାଠାରୁ ଟିକେ ସାନ ଓ ଗୃହପାଳିତ ଗଧମାନଙ୍କଠାରୁ ଆକାରରେ ବଡ । ଏହାର ରଙ୍ଗ ମାଟିଆରୁ ଗାଢ଼ ପିଙ୍ଗଳ ବା ତାମ୍ରବର୍ଣ୍ଣ ଓ ପେଟ ତଳ ଧଳା ରଙ୍ଗର ହୋଇଥାଏ । ଏହାର କାନ ବଡ ଓ ମୁନିଆ ଓ କଳାକଳା ବାଳ ମୁଣ୍ଡଉପରୁ ବାହାରିଥାଏ । ମୁଣ୍ଡଠାରୁ ପିଠି ଉପରଦେଇ ଲାଞ୍ଜଗୁଚ୍ଛର ଅଗ ପର୍ଯ୍ୟନ୍ତ ଗାଢ଼ ବାଦାମୀ ବା କଳାରଙ୍ଗର କେଶର ଦ୍ୱାରା ଗୋଟିଏ କଳାପଟି ଭଳି ଦାଗ ପଡିଥାଏ ।



କଚ୍ଛ ଅଞ୍ଚଳର ଶୁଷ୍କ ଲୁଣି ଜଳବାୟୁରେ ଜଙ୍ଗଲି ଗଧମାନେ ବାସ କରନ୍ତି । ମରୁ ଜାତୀୟ ଉଦ୍ଭିଦ, ଘାସ ଓ ଗୁଳ୍ମ ଆଦି ଏମାନେ ଖାଆନ୍ତି । ଏକଦା ଭାରତର ଉତ୍ତର ପଶ୍ଚିମାଞ୍ଚଳର ବହୁ ସ୍ଥାନରେ ପ୍ରଚୁର ଜଙ୍ଗଲି ଗଧ ଦେଖାଯାଉଥିବା ସ୍ଥଳେ ଗୋରୁ ଓ ମେଣ୍ଢାପଲ ଦ୍ୱାରା ସେମାନଙ୍କ

ଚାରଣଭୂମିର ମାତ୍ରାତିରିକ୍ତ ଉପଯୋଗ, ଗୃହପାଳିତ ପଶୁଙ୍କଠାରୁ ସଂକ୍ରାମକ ରୋଗ ଆକ୍ରମଣ ତଥା ମାନବିକ ହସ୍ତକ୍ଷେପ ଫଳରେ ସେମାନଙ୍କ ସଂଖ୍ୟା ସାଂଘାତିକ ଭାବରେ ହ୍ରାସ ପାଇ କେତେ ଶହରେ ପରିଣତ ହୋଇଛି ।

ଏସୀୟ ଜଙ୍ଗଲି ଗଧ ଜାତିର ତିବ୍ବତୀୟ ଜଙ୍ଗଲି ଗଧ ବା କିଆଙ୍ଗ (Asianus Kiang) ମାନେ ମଧ୍ୟ ସମାନଭାବରେ ବିପଦଗ୍ରସ୍ତ ହୋଇ ପଡ଼ିଛନ୍ତି । ଏମାନେ ଦେଖିବାକୁ ଏସୀୟ ଗଧ ମାନଙ୍କ ଅପେକ୍ଷା ଆକାରରେ ବଡ ଓ ହୃଷ୍ଟକାୟ ବା ଦେଖିବାକୁ କଳା । ତିବ୍ବତ, ଲଦାଖ ଓ ସିକିମରେ ଏ ଜାତିର ଗଧ ଦେଖା ଯାଆନ୍ତି ।

## ବଣୁଆ ଚମରି ଗାଈ

*Bos mutus* (Przewalski)

ଗାଈମାନଙ୍କ ସମଜାତୀୟ ବଣୁଆ ଚମରି ଗାଈ ପ୍ରକାଣ୍ଡ ବଳୁଆ ଜନ୍ତୁ, ଯିଏକି 20,000 ଫୁଟ (6096 ମିଟର) ଉଚ୍ଚତାରେ ବାସ କରିପାରେ । ଢେଙ୍କୁଝୁଲିପଡ଼ିଲା ପରି ଦେହ, ଅବନତ ମୁଣ୍ଡ, ଛୋଟଗୋଡ଼ ଓ ଲମ୍ବ ଚାଆଁସା କଳାମିଶା କହରା ବାଳ ସବୁ ଦେହସାରା ଭରି ରହିଥାଏ । ଏକ ପୂର୍ଣ୍ଣ ବର୍ଦ୍ଧିତ ଚମରିଷଣ୍ଢର ଓଜନ 1800 ପାଉଣ୍ଡ ବା 816 କିଲୋଗ୍ରାମ ପର୍ଯ୍ୟନ୍ତ ହୋଇଥାଏ । ଚମରିଗାଈ ଦେଖିବାକୁ ସାନ ଓ ତାର ସାନସାନ ଶିଙ୍ଗ ଥାଏ । ହିମାଳୟ ପର୍ବତର ବରଫାବୃତ ଅଞ୍ଚଳ ଓ ଥଣ୍ଡା ଜଳବାୟୁ ସହିତ ଏମାନେ ଖାପ ଖାଇ ଚଳିପାରନ୍ତି । ବରଫ ଉପରେ ବଢ଼ିଥିବା ଘାସଗୁଳୁ ଆଦି ଉଦ୍ଭିଦକୁ ଚମରି ଗାଈ ତାର ଥୋମଣିଦ୍ୱାରା ପୋଛି ନେଇ ଖାଏ । ବରଫରେ ଘୋଡ଼େଇ ହୋଇ ପଡିଥିବା ଘାସ ବାହାର କରିବା ଲାଗି ଖୁରା ବ୍ୟବହାର କରେ । ପାଣି ନମିଳିଲେ ଚମରିଗାଈ ବରଫ ଖାଇ ବଞ୍ଚି ପାରେ । ଭାରତର ଲଦାଖ ଓ ଉତ୍ତର କୁମାୟୁଁ ପର୍ବତମାନଙ୍କରେ ବଣୁଆ ଚମରିଗାଈ ଥିବାର ଦେଖାଯାଏ । ବଣୁଆ ଚମରିଗୋରୁମାନଙ୍କଠାରୁ ସାନ ଆକୃତିର ଚମରିଗାଈ



ମାନଙ୍କୁ ହିମାଳୟର ଉଚ୍ଚ ପାହାଡ଼ିଆ ଅଞ୍ଚଳର ଲୋକେ ଶହ ଶହ ବର୍ଷ ଧରି ଗୃହପାଳିତ ପଶୁ ଭାବରେ ପାଳି ଆସୁଛନ୍ତି । ସେମାନଙ୍କ ଦେହରେ ଧଳା ଓ କଳା ରଙ୍ଗର ଛାପିଛାପିକା ଲୋମ ଥାଏ । ଏହି ପଶୁମାନେ ଦୁଧ, ମାଂସ, ଲୋମ ଓ ଚମଡ଼ା ଶିଳ୍ପ ପାଇଁ ଚମଡ଼ା ଦିଅନ୍ତି । ଚମରି ଗାଈକୁ ଭାରବାହୀ ପଶୁ ଭାବରେ ମଧ୍ୟ ବ୍ୟବହାର କରାଯାଏ ।

## ଅରଣା ମଇଁଷି

*Bubalus bubalis* (Linnaeus)

ଗୃହପାଳିତ ମଇଁଷି ପରି ଅରଣା ମଇଁଷି ଶିଲଟ କଳା ରଙ୍ଗର ଏକ ପଶୁ । ଏମାନଙ୍କର ସିଧାସିଧା ଜାଳିଆ ଗୋଡରେ ପାଣ୍ଡରା ଧଳା ରଙ୍ଗର ଖୁରା ଥାଏ । ଶିଙ୍ଗ ଦୁଇଟି ଚେପ୍‌ଟା ହୋଇ ଅର୍ଦ୍ଧବୃତ୍ତାକାରରେ ଉପରକୁ ବାଙ୍କିଯାଇଥାଏ । ଉଭୟ ମାଈ ଓ ଅଣିରା ମଇଁଷିଙ୍କର ଶିଙ୍ଗ ବେଶ୍ ବଡ଼ିଥାଏ । ଆମର ଗୃହପାଳିତ ମଇଁଷିମାନେ ଏହି ଅରଣା ମଇଁଷିଙ୍କ ଠାରୁ ଉଦ୍ଭୂତ ହୋଇଛନ୍ତି ।

ଆସାମ ଓ ଅରୁଣାଚଳ ପ୍ରଦେଶର ବ୍ରହ୍ମପୁତ୍ର ନଦୀର ଅବବାହିକା ତଥା ମଧ୍ୟପ୍ରଦେଶ, ପଶ୍ଚିମଓଡ଼ିଶା ଓ ପୂର୍ବମହାରାଷ୍ଟ୍ରର ସନ୍ତସନ୍ତିଆ ଘାସ ଜଙ୍ଗଲ ମାନଙ୍କରେ ଅରଣା ମଇଁଷି ମାନେ ବାସ କରନ୍ତି । ସେମାନେ ଛୋଟ ଛୋଟ ଦଳରେ ଘାସ ଚରନ୍ତି ଓ ଦିନବେଳେ ଅଗଭୀର ଜଳାଶୟ ମାନଙ୍କରେ ବାସ କରନ୍ତି ।

## ଗୟଳ

*Bos gaurus* (H. Smith)

"ବାଇସନ୍" ନାମରେ ପରିଚିତ ଗୟଳ ଏକ କଳାରଙ୍ଗର ବଡ ଜନ୍ତୁ । ଏହାର ଗୋଡ଼ ଗୁଡ଼ିକ ଆମେରିକୀୟ ବଣୁଆ ମଇଁଷି ତୁଳନାରେ ଛୋଟ ଓ ଖୁରାର ରଙ୍ଗ ଧଳା । ଦେହର ଲୁମ ଛୋଟ ଓ ରଙ୍ଗ ରାଢ଼ ବାଦାମିରୁ ଗାଢ଼ ବାଦାମି ବା କଳା ହୋଇଥାଏ । ଛୋଟ ଲାଞ୍ଜ ଓ ତା ଅଗରେ ଗୋଛାଏ କଳାବାଳ ଛୋଟ ଝୁମ୍ପାଟିଏ ପରି ଦିଶେ । ଉଭୟ ପୁରୁଷ ଓ ସ୍ତ୍ରୀ ଗୟଳଙ୍କର ବଡ଼ ବଡ଼ ଶିଙ୍ଗ ଥାଏ । ଅରୁଣାଚଳ ପ୍ରଦେଶ, ନାଗାଲାଣ୍ଡ, ଆସାମ, ମିଜୋରାମ, ପଶ୍ଚିମବଙ୍ଗ, ବିହାର, ଓଡ଼ିଶା, ମଧ୍ୟପ୍ରଦେଶ, ତାମିଲନାଡୁ, କର୍ଣ୍ଣାଟକ ଓ କେରଳର ଗ୍ରୀଷ୍ମ ମଣ୍ଡଳୀୟ ଘଞ୍ଚ ଅରଣ୍ୟରେ ପଲ ପଲ ଗୟଳ ଦେଖାଯାଆନ୍ତି । ପ୍ରତି ପଲରେ ଛଅରୁ ବାରଟି ପର୍ଯ୍ୟନ୍ତ ପଶୁ ରହନ୍ତି । ଏମାନେ ଘାସ, ବାଉଁଶ ଗଜା, ପତ୍ର ଓ ଗଛର ବକଳ ଖାଇ ବଞ୍ଚନ୍ତି ।

## ବଡ଼ଶିଙ୍ଗା ହରିଣ

*Cervus duvauceli* (G. Cuvier)

ଶାଖାୟିତ ଶିଙ୍ଗ ବିଶିଷ୍ଟ ବଡ଼ ଶିଙ୍ଗା ହରିଣ ଏକ ଚମତ୍କାର ପ୍ରାଣୀ । ଏପରି ଶିଙ୍ଗ ପାଇଁ ଏହାକୁ ବଡ଼ ଶିଙ୍ଗା ବୋଲି ନାମ ଦିଆ ଯାଇଛି । ନରମ ଲୋମଯୁକ୍ତ ଏହାର ରଙ୍ଗୀନ ଚମଡ଼ା ଯୋଗୁଁ ଏହାର ଦେହ

ଭଳକ ଓ ଦର୍ଶନୀୟ ହୋଇଥାଏ । ଖରାଦିନେ ଏହା ଦେହର ରଙ୍ଗ ମଳିନ ଦେଖାଯାଏ । ନିୟମିତ ବ୍ୟବଧାନରେ ଏହାର ଶାଖାୟିତ ଶିଙ୍ଗଟି ଖସିପଡେ ଓ ତା ଜାଗାରେ ନୂଆ ଶିଙ୍ଗ ଜନ୍ମେ । ନୂଆ ଉଚ୍ଚୁରିଥିବା ଶିଙ୍ଗର ଖୋଳଟି ମଖମଲ ପରି କୋମଳ । ପୋଖତ ହୋଇଗଲେ ଯେତେବେଳେ ଏହା ଟାଣ ହୋଇଯାଏ, ସେତେବେଳେ ତାର ଖୋଳପା ଛାଡିଯାଏ । ସାଧାରଣତଃ ମକମାସ ବା ସଙ୍ଗମଋତୁରେ ଏହା ଘଟିଥାଏ ।



ବଡଶିଙ୍ଗା ହରିଣ ବୁଦା ଘାସ ଖାଏ । ଏମାନେ ପଲ ପଲ ହୋଇ ରହନ୍ତି । ଗୋଟିଏ ପଲରେ 30ରୁ 50 ଓ ଅଧିକାଂଶ କ୍ଷେତ୍ରରେ ଶହଶହ ହରିଣ ଦଳବଦ୍ଧ ହୋଇ ରହନ୍ତି । କେବଳ ସଙ୍ଗମ ଋତୁରେ ଅଣ୍ଡିରା ହରିଣ ମାଈମାନଙ୍କ ସହିତ ଯୋଗ ଦିଏ । ସଙ୍ଗମ ପରେ ଅଣ୍ଡିରା ହରିଣ ମାଈକୁ ପରିତ୍ୟାଗ କରି ଅଣ୍ଡିରା ମାନଙ୍କ ଦଳରେ ମିଶେ । କେତେକ ହରିଣ ଏକୁଟିଆ ହୋଇ ରହନ୍ତି । ହରିଣୀମାନେ ସେମାନଙ୍କ ଛୁଆ ସହିତ ନିଜ ଦଳରେ ଯୋଗ ଦିଅନ୍ତି । ଏମାନେ ବେଶ୍ ବଡ଼ ପରିସର ମଧ୍ୟରେ ଏକାଠି ହୋଇ ବୁଲନ୍ତି । ପ୍ରତି ଦଳ ଗୋଟିଏ ପ୍ରଜନନକ୍ଷମ ବୟସ୍କା ହରିଣୀର ନେତୃତ୍ୱରେ ପରିଚାଳିତ ହୁଏ ।

ଭାରତର ଉତ୍ତର ଓ ପୂର୍ବାଞ୍ଚଳ, ଉତ୍ତରପ୍ରଦେଶ, ଆସାମ ଏବଂ ମଧ୍ୟପ୍ରଦେଶର ସନ୍ତସନିଆ ଓ ଶୁଖିଲା ତୃଣଭୂମି ମାନଙ୍କରେ ବଡ଼ଶିଙ୍ଗା ହରିଣ ଦେଖା ଯାଆନ୍ତି ।

## ଚଉଶିଙ୍ଗା ହରିଣ

*Tetracerus quadricornis* (Blainville)

ବାଳିହରିଣ ଜାତିର ହରିଣମାନେ ଦୁଇପାଦ ଖୁରାବିଶିଷ୍ଟ ତୃଣାହାରୀ ରୋମନ୍ଥନକାରୀ ପ୍ରାଣୀ । ଏମାନଙ୍କର ଦୃଷ୍ଟିଶକ୍ତି, ଘ୍ରାଣ ଶକ୍ତି ଓ ଶ୍ରୁତିଶକ୍ତି ଅତି ଉନ୍ନତ । ସେମାନେ ଖୁବ୍ ଦ୍ରୁତଗାମୀ ଜନ୍ତୁ ।

ଶିଙ୍ଗର ଆକୃତି ଯୋଗୁଁ ମୃଗମାନଙ୍କ ମଧ୍ୟରେ ଚଉଶିଙ୍ଗାର ସ୍ଥାନ ସ୍ୱତନ୍ତ୍ର । କେବଳ ଅଣ୍ଡିରା ଚଉଶିଙ୍ଗା ହରିଣ ମାନଙ୍କ ମୁଣ୍ଡରେ ଚାରୋଟି ଛୋଟ ମୁନିଆ ଶିଙ୍ଗ ଆଗପଛ ହୋଇ ରହିଥାଏ । ସାମନାପଟ ଶିଙ୍ଗ ଦୁଇଟି 5 ରୁ 6 ସେଣ୍ଟିମିଟର ଲମ୍ବ ହୁଏ ଓ ଏପରିକି ଅଣ୍ଡିରାମାନଙ୍କ ପଛପଟ ଦୁଇଶିଙ୍ଗର ଲମ୍ବ 12 ସେଣ୍ଟିମିଟର ପର୍ଯ୍ୟନ୍ତ ହୋଇଥାଏ । ଏହାର ଶରୀରର ଲମ୍ବ ପ୍ରାୟ

ଏକମିଟରଓ ଠିଆ ହେଲାବେଳେ କାନ୍ଧପାଖରେ ଏହାର ଉଚ୍ଚତା ୬୦ ସେଣ୍ଟିମିଟରେ ପର୍ଯ୍ୟନ୍ତ ହୁଏ । ଏହା ଦେହରେ ଛୋଟ ଛୋଟ ପତଳା ଲୋମ ଥାଏ । ଦେହର ରଙ୍ଗ ବାଦାମୀରୁ ଲାଲ୍‌ମିଶା ବାଦାମୀ ଓ ପେଟତଳ ଧଳା ଦେଖାଯାଏ । ପ୍ରତି ଗୋଡ଼ର ସାମ୍ନାପଟେ କଳାଗାର ବା ପଟିଟାଏ ଥାଏ, ଯାହାକି ଆଗଗୋଡ଼ରେ ଟିକେ ଚଉଡ଼ା ହୋଇଥାଏ । ଭାରତୀୟ ମହାଦେଶର କୁହିଡ଼ିକୁହିଡ଼ିଆ ପାହାଡ଼ିଆ ଅଞ୍ଚଳରେ ଚଉଶିଙ୍ଗା ହରିଣ ବାସ କରନ୍ତି । ଏମାନେ ଘଞ୍ଚ ଜଙ୍ଗଲରେ ଦେଖାଯାଆନ୍ତି ନାହିଁ । ପାଣିଥିବା ସ୍ଥାନ ବା ଜଳାଶୟ ପାଖକୁ ପାଣି ପିଇବା ଲାଗି ଏମାନେ ବରାବର ଯାଉଥିବା ଯୋଗୁଁ ସେଭଳି ସ୍ଥାନମାନଙ୍କରେ ଗୋଟିଏ ବା ଦୁଇଟି ଚଉଶିଙ୍ଗାକୁ ଦେଖିବାକୁ ମିଳେ ।

## ମଣିପୁରୀ ହରିଣ

*Cervus eldi eldi* (M'Clelland)

ମଣିପୁରୀ ହରିଣ ଦେଖିବାକୁ ସମ୍ବର ଭଳି, ମାତ୍ର ସମ୍ବର ଠାରୁ ଆକୃତିରେ ଟିକିଏ ସାନ ଓ ସୁନ୍ଦର ପ୍ରାଣୀ । ଏହାର ଶିଙ୍ଗ ଅନ୍ୟ ମୃଗମାନଙ୍କ ଠାରୁ ଅନେକ ପୃଥକ । ଅର୍ଦ୍ଧବୃତ୍ତାକାର ଶିଙ୍ଗରେ ଦୁଇଟିରୁ ଦଶଟି ପର୍ଯ୍ୟନ୍ତ ଶାଖା ଶିଙ୍ଗ ଥାଏ । ପ୍ରତିଶିଙ୍ଗର ସବୁଠାରୁ ଲମ୍ବା ଶାଖାଶିଙ୍ଗ ମୁଖ୍ୟଶିଙ୍ଗ ସହିତ ମିଶି ଅଖଣ୍ଡ ବକ୍ରରେଖାଟିଏ ସୃଷ୍ଟିକରେ । ଏହି ଗୁଣ ଲାଗି ମଣିପୁରୀ ହରିଣକୁ ଭ୍ରୂ-ଶିଙ୍ଗା ମୃଗ ବୋଲି ମଧ କୁହାଯାଏ । ଏହାର ଚମଡ଼ାରେ ଟାଆଁସା ଲୋମ ପତଳା ହୋଇଥାଏ । ଶୀତଋତୁରେ ପୁରୁଷ ମୃଗମାନଙ୍କ ଦେହ ଗାଢ଼ ବାଦାମୀ ରଙ୍ଗ ଦିଶେ ଓ ଏହା ଗ୍ରୀଷ୍ମଋତୁରେ ଈଷତ୍ ପିଙ୍ଗଳ ବର୍ଣ୍ଣ ଦେଖାଯାଏ । ସ୍ତ୍ରୀ ମୃଗ ଓ ଛୁଆମାନେ ଈଷତ୍ ପିଙ୍ଗଳ ବର୍ଣ୍ଣର ହୋଇଥାଆନ୍ତି । ଛୁଆମାନଙ୍କ ଦେହରେ ଛାପିଛାପିକା ଚିହ୍ନ ଥାଏ ।

ଏମାନେ ଖୋଲା ଝାଡ଼ଜଙ୍ଗଲରେ ବୁଲିବାକୁ ଭଲପାଆନ୍ତି । ଏବେ ମଣିପୁରର କେବୁଲ୍ ଲେମ୍‌ଜୋ ଜାତୀୟ ଉଦ୍ୟାନରେ ଥିବା ଲୋଗ୍‌ଟାକ୍ ହ୍ରଦତୀରରେ ଏପ୍ରକାର ମୃଗମାନେ ସୀମିତ ରହିଛନ୍ତି । ଏମାନେ ଛୋଟଛୋଟ ଦଳରେ ଘାସ ଚରିବାର ଦେଖାଯାଏ । ଜଙ୍ଗଲଧାରରେ ଥିବା ଶସ୍ୟକ୍ଷେତ୍ରମାନଙ୍କରେ କେତେବେଳେ କେମିତି ଏହି ମୃଗମାନେ ପଶି ଫସଲ ଖାଇଯାଆନ୍ତି ।

## କାଶ୍ମୀର ହରିଣ

*Cervus elaphus hanglu* (Wagner)

କାଶ୍ମୀର ହରିଣ ବା ହେଙ୍ଗୁଲ୍ ଦେଖିବାକୁ ବେଶ୍ ବଡ଼ଆକୃତିର । ଏହାର ଶିଙ୍ଗ ବହୁଶାଖା ବିଶିଷ୍ଟ । ପ୍ରତିଶିଙ୍ଗରେ ପାଞ୍ଚ ଛଅଟି ଶାଖା ଥାଏ । ଦେହର ରଙ୍ଗ ଝାପ୍‌ସା ବାଦାମୀରୁ ଗାଢ଼ ବାଦାମୀ ଓ ଲାଞ୍ଜ ତଳପଟେ ପିଚା ଉପରେ ମଧା ମଧା ଧଳାରଙ୍ଗ ଦେଖାଯାଏ । ଦେହର ଭିତରପଟ ଗୋଡ଼ର ରଙ୍ଗ ଝାପ୍‌ସା ଦେଖାଯାଏ । ଏହାର ଓଠ ଓ କାନଗୁଡ଼ିକ ସାମାନ୍ୟ ଧଳାରଙ୍ଗର ।

ଦଳବଦ୍ଧଭାବରେ ପ୍ରତି ଦଳରେ ଦୁଇଟିରୁ ଅଠରଟି ପର୍ଯ୍ୟନ୍ତ କାଶ୍ମୀର ହରିଣ ନଦୀତୀରବର୍ତ୍ତୀ

ଘଞ୍ଚ ଜଙ୍ଗଲମାନଙ୍କରେ ବାସ କରନ୍ତି । କାଶ୍ମୀର ଉପତ୍ୟକାର ଉତ୍ତରାଞ୍ଚଳ ଓ ହିମାଞ୍ଚଳ ପ୍ରଦେଶର ଛାୟା ଅଞ୍ଚଳରେ ଏହିଜାତିର ହରିଣମାନେ ଦେଖାଯାଆନ୍ତି । ମାତ୍ର ଏବେ କାଶ୍ମୀରର ଦାଚିଗାମ୍ ଠାରେ 10,000ଫୁଟ ଉଚ୍ଚତାରେ ଥିବା ଜଙ୍ଗଲରେ ଏମାନେ ସୀମିତ ହୋଇ ରହିଛନ୍ତି । ଗ୍ରୀଷ୍ମ ଋତୁରେ ସେମାନେ ବଡବଡ ଦଳରେ ଆହୁରି ଉଚ୍ଚକୁ ଉଠିଯାଆନ୍ତି । ଉନବିଂଶ ଶତାବ୍ଦୀର ଆରମ୍ଭରେ ସେମାନଙ୍କର ସଂଖ୍ୟା 5000ଥିବା ବେଳେ 1970 ମସିହା ସୁଦ୍ଧା ଦୁର୍ଭାଗ୍ୟବଶତଃ ଏହା ପ୍ରାୟ 150କୁ କମି ଯାଇଛି ।



## କୃଷ୍ଣସାର (କାଳିହରିଣ)

*Antilope cervicapra* (Linnaeus)

ପୃଥିବୀର କାଳି ହରିଣ ଜାତିର ମୃଗମାନଙ୍କର ମଧ୍ୟରେ କୃଷ୍ଣସାର ହେଉଛି ଅତୀବ ସୁନ୍ଦର । ବୟସ୍କ କାଳି ହରିଣ ଦେଖିବାକୁ କଳାମିଶା ବାଦାମୀ ରଙ୍ଗର କିମ୍ବା ପୂରା କଳାରଙ୍ଗର ଓ ଏହା ଶରୀରର ତଳପାଖ ଧଳା । ଏହାର ଆଖି ଚାରିପଟେ ଧଳାରଙ୍ଗର ଲୋମ ଥାଏ । ଶିଙ୍ଗଗୁଡ଼ିକ ମୋଡ଼ିମୋଡ଼ି ହୋଇ 50 ରୁ 60 ସେଣ୍ଟିମିଟର ଲମ୍ବ ହୁଏ । ମାଈମାନେ ଆକାରରେ ସାନ ଓ ତା'ଛଡ଼ା ମାଈ ହରିଣର ଶରୀରର ତଳଭାଗ ଧଳା ଓ ଆଦୌ ଶିଙ୍ଗ ନଥାଏ । କାଳିହରିଣମାନେ ରାଜସ୍ଥାନ, ଗୁଜୁରାଟ, ମହାରାଷ୍ଟ୍ର, କର୍ଣ୍ଣାଟକ ଓ ମଧ୍ୟପ୍ରଦେଶର ସମତଳ ଅଞ୍ଚଳରେ ଥିବା ବୁଦୁବୁଦିକିଆ ଜଙ୍ଗଲମାନଙ୍କରେ ଦେଖାଯାଆନ୍ତି । ଗୋଟିଏ ଗୋଟିଏ ଦଳରେ 10 ରୁ 30 ପର୍ଯ୍ୟନ୍ତ କାଳି ହରିଣ ଥାଆନ୍ତି । ପୃଥିବୀର ସବୁଠାରୁ ଦ୍ରୁତ ବେଗରେ ଧାଉଁଥିବା ପ୍ରାଣୀମାନଙ୍କ ମଧ୍ୟରେ କାଳି ହରିଣ ଅନ୍ୟତମ । ଘାସପତ୍ର, ବବୁଲ ଜାତୀୟ ଗଛର ଛୁଇଁ ଓ ଫଳ ଆଦି ଏହାର ଖାଦ୍ୟ ।

ମାଂସ, ଚମଡ଼ା, ଓ କୌତୁକ ଶିକାର ତଥା ବାସସ୍ଥଳୀର ବିଧ୍ୱଂସନ ଫଳରେ କୃଷ୍ଣସାର ମୃଗମାନଙ୍କ ସଂଖ୍ୟା କମିବାରେ ଲାଗିଛି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଜୀବ ସଂରକ୍ଷିତ ଜଙ୍ଗଲ, ଜାତୀୟ ପାର୍କ ଓ ଅଭୟାରଣ୍ୟମାନଙ୍କରେ ବଞ୍ଚି ରହିଛନ୍ତି । ଶହଶହ ବର୍ଷ ଧରି ରାଜସ୍ଥାନରେ ବୈଷ୍ଣବ ମାନେ ଧାର୍ମିକ ଉଦ୍ଦୀପନା ମଧ୍ୟରେ କୃଷ୍ଣସାରମାନଙ୍କୁ ଯେପରି ଭାବରେ ରକ୍ଷା କରି ଆସିଛନ୍ତି, ସେଥିପାଇଁ ସେମାନେ ପ୍ରଶଂସାର ପାତ୍ର । ରାଜସ୍ଥାନର ଖେଜାର୍ଲି ଅଞ୍ଚଳରେ କୃଷ୍ଣସାରମାନେ ଜନବସତି ମଧ୍ୟରେ ସ୍ୱାଧୀନ ଭାବରେ ବୁଲାବୁଲି କରିବାର ଦେଖାଯାଏ ।



## କସ୍ତୁରୀମୃଗ

*Moschus moschiferus* (Linnaeus)

ପୁରୁଷମୃଗମାନଙ୍କ ନାଭିପାଖରେ ପେଟର ଚମଡ଼ା ତଳେ କସ୍ତୁରୀଗ୍ରନ୍ଥି ଥାଏ । ସଂଗମ ଋତୁରେ ମାଈମୃଗମାନେ କସ୍ତୁରୀର ତୀବ୍ର ଗନ୍ଧଦ୍ୱାରା ଆକର୍ଷିତ ହୋଇ ପୁରୁଷ ପାଖକୁ ଆସନ୍ତି । କେବଳ ଏହି ସମୟ ଛାଡ଼ିଦେଲେ ପୁରୁଷ କସ୍ତୁରୀମୃଗ ବର୍ଷର ଅନ୍ୟସମୟ ମାନଙ୍କରେ ଦିନବେଳେ ଏକୁଟିଆହୋଇ ଲୁଚିରହେ ଓ ରାତିହେଲେ ଚରିବାକୁ ବାହାରେ । କସ୍ତୁରୀମୃଗର ଶାରୀରିକ ଗଠନର ବୈଶିଷ୍ଟ୍ୟ ହେଉଛି ଶିଙ୍ଗ ନଥିବା ଗୋଳିଆ ମୁହଁ, ବଡ଼ବଡ଼ କାନ ଓ ଛୋଟ ଲାଞ୍ଜ । ପୁରୁଷ ମୃଗର ଶ୍ୱାନଦାନ୍ତ ଦୁଇଟି ବଙ୍କା ହୋଇ ବାହାରି ଆସିଥାଏ । ଏହା ଦେହରେ ଟାଆଁସା ଲୋମ ଥାଏ, ଯାହାର ରଙ୍ଗ ହଳଦିମିଶା ବାଦାମୀରୁ ସୁନେଲି ଲାଲ୍ ଦିଶେ ।



ମୃଗମାନଙ୍କ ମଧ୍ୟରେ କସ୍ତୁରୀମୃଗ ହେଉଛି ଅତି ଆଦିମ । କାଶ୍ମୀର ଠାରୁ ଅରୁଣାଚଳ ପ୍ରଦେଶ ପର୍ଯ୍ୟନ୍ତ ଉତ୍ତରଭାରତର ଉଚ୍ଚ ପାର୍ବତ୍ୟାଞ୍ଚଳରେ ଏମାନେ ବାସ

କରନ୍ତି । ବରଫରେ ଜନ୍ମୁଥିବା ଶିଉଳି ଜାତୀୟ ଉଦ୍ଭିଦ, ଘାସ, ପତ୍ର ଓ ଫୁଲ ଆଦି ଏମାନଙ୍କର ଆହାର । ଠିଆହେଲା ବେଳେ କାନ୍ଧପାଖରେ କସ୍ତୁରୀମୃଗର ଉଚ୍ଚତା ପ୍ରାୟ 60ସେଣ୍ଟିମିଟର । ଏମାନଙ୍କ ଗୋଡଗୁଡ଼ିକ ଛୋଟ ଓ ଶକ୍ତ ଏବଂ ବଡ଼ବଡ଼ ଖୁରା ବରଫାବୃତ ଖସଡ଼ାବାଟ ଓ ପଥୁରିଆ ଭୂମିରେ ଧାଇଁବା ଲାଗି ବେଶ୍ ପାରଗ ।

ସୁଗନ୍ଧ ଦ୍ରବ୍ୟମାନ ତିଆରି କରିବା ଲାଗି କସ୍ତୁରୀ ଲୋଭରେ ଏମାନଙ୍କୁ ନିର୍ଦ୍ଦୟଭାବରେ ହତ୍ୟା କରାଯିବା ଫଳରେ ଏମାନଙ୍କ ସଂଖ୍ୟା ଏତେ ହ୍ରାସ ପାଇଗଲାଣି ଯେ, ଏବେ କସ୍ତୁରୀମୃଗମାନେ ଅତ୍ୟଧିକ ବିପଦାପନ୍ନ ହୋଇପଡିଛନ୍ତି ।

## ଗୁରାଣ୍ଡି

*Tragulus meminna* (Erxleben)

ଗୁରାଣ୍ଡି ଗୋଟିଏ ଛୋଟ ଜୀବ । ଠିଆହେଲାବେଳେ ଏହାର କାନ୍ଧପାଖରେ ଉଚ୍ଚତା 25 ରୁ 30 ସେ.ମି ରୁ ଅଧିକ ନୁହେଁ । ଏହାର ଶିଙ୍ଗ ନାହିଁ । ମାତ୍ର ଛୋଟ ଲାଞ୍ଜଟିଏ ଅଛି । ଏହାର ଦେହର ରଙ୍ଗ ବାଇଗଣି ମିଶା ସବୁଜ ସହିତ ବାଦାମୀ ଓ ତହିଁରେ ହଳଦିଆ ଛାପିଛାପିକା ଦାଗ ଥାଏ । ଏହାର ପେଟତଳ ଧଳାରଙ୍ଗର ହୋଇଥାଏ । ଅଣିରା ଗୁରାଣ୍ଡିର ଶ୍ୱାନଦନ୍ତ ଦୁଇଟି ବଢ଼ି ପଦାକୁ ବାହାରି



ଆସିଥାଏ । ଏହା ଏକ ଭୟାଳୁ ପ୍ରାଣୀ । ଦକ୍ଷିଣ ଭାରତ, ମଧ୍ୟପ୍ରଦେଶ, ଓଡ଼ିଶା ଓ ବିହାର ରାଜ୍ୟର ଜଙ୍ଗଲମାନଙ୍କରେ ଦେଖିବାକୁ ମିଳେ ଓ ଘାସପତ୍ର ଆଦି ଖାଇ ଏହା ବଞ୍ଚେ ।

## ଚିଙ୍କାରା

*Gazella dorcas* (Linneaus)

ଚିଙ୍କାରା ହେଉଛି ଭାରତୀୟ ମୃଗମାନଙ୍କ ମଧ୍ୟରେ ଅତୀବ ରମଣୀୟ ପ୍ରାଣୀ । ଏହାର ବାଦାମୀ ବା ପିଙ୍ଗଳ ବର୍ଣ୍ଣର ସରୁ ଦେହକୁ ସାମାନ୍ୟ ବଙ୍କାଶିଙ୍ଗ ଭଲ ମାନେ । ଏହି ଶିଙ୍ଗ ସାରା ମୂଳରୁ ଅଗ ପର୍ଯ୍ୟନ୍ତ



ଲାଟିଲାଟି ମୁଦିରଳି ଗଣ୍ଡିମାନ ଥାଏ । ଏହାର ଥୋମଣିର ତଳ ଅଂଶ, ଛାତି ଓ ଦେହର ତଳପାଖ ଧଳା ରଙ୍ଗର । ମାଈମାନଙ୍କର ଶିଙ୍ଗ ଅଣ୍ଡିରାଠାରୁ ଛୋଟ ।

ଏମାନେ ସାଧାରଣତଃ ଦଳବଦ୍ଧ ଜୀବନ ବିତାଇ ଥାଆନ୍ତି । ପ୍ରତିଦଳରେ 10 ରୁ 20 ପର୍ଯ୍ୟନ୍ତ ଚିଙ୍କାରା ରହନ୍ତି । ଏମାନେ ଅଳ୍ପ ଗଛଥିବା ବୁଦିବୁଦିକିଆ ଝାଡ଼ଜଙ୍ଗଲମାନଙ୍କରେ ରହିବା ପାଇଁ ଭଲ ପାଆନ୍ତି । ଭାରତର କେନ୍ଦ୍ର ଓ ଉତ୍ତର ପଶ୍ଚିମାଞ୍ଚଳର ଅର୍ଦ୍ଧଶୁଷ୍କ ଜଳବାୟୁରେ ଏମାନେ ବାସ କରନ୍ତି । ଘାସପତ୍ର ଓ ଜଙ୍ଗଲି ଫଳ ଏମାନଙ୍କର ଖାଦ୍ୟ । ଏମାନେ ଅତି କ୍ଷିପ୍ର ଓ ବେଗଗାମି ।

## ତିବ୍ବତୀୟ କୃଷ୍ଣସାର

*Procapra picticaudata* (Hodgson)

ଦେଖିବାକୁ ଛେଳି ଆକୃତିର ଏହି ପ୍ରାଣୀର ଦେହର ରଙ୍ଗ କଳା । ଶିଙ୍ଗଗୁଡ଼ିକ ମୁନିଆ ହୋଇ ମୂଳରୁ ପଛ ଆଡ଼କୁ ଟିକେ ବଙ୍କେଇ ଯାଇଥାଏ । ଛୋଟ ଲାଞ୍ଜଅଗରେ ମୋଟାଏ କଳାବାଳ ଥାଏ ।



ମାଈମାନଙ୍କର ଶିଙ୍ଗ ନଥାଏ । ଏ ଜାତିର ମୃଗ ତିବ୍ବତ ମାଳଭୂମି, ଉତ୍ତରପୂର୍ବ ଲାଦାଖ, ସିକିମ୍ ଓ କୁମାୟୁଁ ପର୍ବତମାଳାରେ ଦେଖାଯାଆନ୍ତି ।

## ହିମାଳୟ ପାର୍ବତ୍ୟ ଛେଳି

*Hemitragus jemlahicus* (H. Smith)

ହିମାଳୟ ପାର୍ବତ୍ୟ ଛେଳି ଏକ ଲମ୍ବ ଲୋମଯୁକ୍ତ ପଶୁ, ଯାହାର ବେକ ଓ କାନ୍ଧ ଘନଲୋମରେ ଆବୃତ ହୋଇଥାଏ । ଏହି ଲମ୍ବ ଚାଳିଁସା କେଶଗୁଚ୍ଛ ଆଣ୍ଠୁ ପର୍ଯ୍ୟନ୍ତ ଅପରିଷ୍କାର ଦାଢ଼ି ପରି ଓହଳିଥାଏ । ଏହାର ଶରୀର ଅତି ଶକ୍ତ । ଚାଣୁଆ ଗୋଡ଼, ଠିଆ ସରୁ କାନ ଓ ଶିଙ୍ଗ ଦୁଇଟି ପଛ



ଆଡ଼କୁ ବଙ୍କା ଥାଏ । ଏହାର ଦେହର ରଙ୍ଗ ସାଧାରଣତଃ ବାଦାମୀମିଶା ଲାଲ । ନାମ ଅନୁସାରେ କାଶ୍ମୀରରୁ ଭୁଟାନ୍ ପର୍ଯ୍ୟନ୍ତ ବ୍ୟାପିଥିବା ହିମାଳୟ ପାର୍ବତ୍ୟ ଅଞ୍ଚଳର 3000ରୁ 4000 ପର୍ଯ୍ୟନ୍ତ ମିଟର ଉଚ୍ଚତାରେ ଓକ୍ ଏବଂ ଅନ୍ୟ ଗଛମାନଙ୍କରେ ଭରି ରହିଥିବା ପଥୁରିଆ ଶୃଙ୍ଗ ଗୁଡ଼ିକରେ ଏଇସବୁ ଛେଳି ବାସ କରନ୍ତି । ଶୀତ ଦିନେ ଏମାନେ ପର୍ବତର ପାଦଦେଶକୁ ଖସି ଆସନ୍ତି ।

## ନୀଳଗିରି ପାହାଡ଼ି ଛେଳି

*Himitragus hylocrius* (Ogilby)

ଦକ୍ଷିଣ ଭାରତରେ ଦେଖାଯାଉଥିବା ଏକମାତ୍ର ପାର୍ବତ୍ୟ ଛେଳି ହେଉଛି ନୀଳଗିରି ପାହାଡ଼ି ଛେଳି। ଏହା ହିମାଳୟ ପାର୍ବତ୍ୟ ଛେଳିର ପ୍ରତିରୂପ । ଏହା ଏକ କ୍ଷିପ୍ରଗାମୀ ଛୋଟ ବଳିଷ୍ଠ ପ୍ରାଣୀ, ଯିଏ ପାହାଡ଼ିଆ ଅଞ୍ଚଳମାନଙ୍କରେ ବଞ୍ଚିରହିପାରେ । ଏହି ଛେଳିମାନଙ୍କର ରଙ୍ଗ ମାଟିଆ ବାଦାମୀ ଓ ବୟସ ବଢ଼ିବା ସଙ୍ଗେସଙ୍ଗେ ଏମାନେ ଏମାନେ କଳା ଦିଶନ୍ତି । ମାଈ ଓ ଛୁଆମାନେ ଦେଖିବାକୁ

ହଳଦିଆ ମାଟିଆରଙ୍ଗର । ଅଣିରାମାନଙ୍କ ପିଠିରେ ଘୋଡ଼ା ଜିନ୍ ପରି ଧୂସରବର୍ଣ୍ଣର ମଝାଏ ଲୋମ ଓ ଛୋଟ ଦାଢ଼ି ଥାଏ । ଶିଙ୍ଗ ଦୁଇଟି ସମାନ୍ତରାଳ ଭାବରେ ପିଠି ଆଡ଼କୁ ନଇଁ ଆସି ବଙ୍କେଇ ଯାଇଥାଏ । ଛକାଛକି ହୋଇପରି ଶିଙ୍ଗସାରା କୁଣ୍ଢକୁଣ୍ଢିଆ ମୁଡ଼ିଆ ଦାଗ (ଏହି ବହିର ପ୍ରଚ୍ଛଦ ପଟରେ ଥିବା ଚିତ୍ର ଦେଖନ୍ତୁ) ଭରି ରହିଥାଏ ।

ତାମିଲନାଡୁର ନୀଳଗିରି ପର୍ବତମାଳା (ଯାହାର ନାମ ଅନୁସାରେ ଏ ପ୍ରାଣୀର ନାମକରଣ ହୋଇଛି), କେରଳର ଆନାମଲାଇ ପର୍ବତମାଳା ଓ ପଶ୍ଚିମ ଘାଟର କେତେକ ଅଞ୍ଚଳରେ 1300 ରୁ 2600 ମିଟର ଉଚ୍ଚତାରେ ଥିବା ନିଛାଟିଆ ଖୋଲମାନଙ୍କରେ ଏ ଜାତିର ପାହାଡ଼ି ଛେଳିମାନେ ରହନ୍ତି । ଗୋଟିଏ ଗୋଟିଏ ପଲରେ ଛୋଟବଡ଼ ମିଶାଇ 5 ରୁ 50 ପର୍ଯ୍ୟନ୍ତ ଛେଳି ଏକାଠି ରହନ୍ତି । ଏମାନଙ୍କର ସେପରି କୌଣସି ସଙ୍ଗମଋତୁ ନାହିଁ । ମାଈମାନେ ଥରକେ ଦୁଇଟି ଛୁଆ ଦିଅନ୍ତି ।

ମାଂସାଶୀ ପ୍ରାଣୀମାନଙ୍କର ଆକ୍ରମଣ ଓ ମାଂସ ଉଦ୍ଦେଶ୍ୟରେ ଲୋକମାନଙ୍କଦ୍ୱାରା ଶିକାର ସାଙ୍ଗକୁ ବାସସ୍ଥଳୀର ବିଧ୍ୱଂସନ ଫଳରେ ନୀଳଗିରି ପାହାଡ଼ି ଛେଳିମାନେ ବିପଦାପନ୍ନ ହୋଇପଡ଼ିଛନ୍ତି । ଜଙ୍ଗଲ ବିଭାଗ ଦ୍ୱାରା ଏକପ୍ରକାର ଗଛର ରୋପଣ ଓ କୃତ୍ରିମ ଜଙ୍ଗଲ ସୃଷ୍ଟି ପଦକ୍ଷେପ ଦ୍ୱାରା ଏମାନଙ୍କର ସ୍ୱାଭାବିକ ବାସସ୍ଥଳୀର ପରିବର୍ତ୍ତନ ଘଟି ଏମାନଙ୍କ ସଂଖ୍ୟା ହ୍ରାସ ପାଇଛି । ପାହାଡ଼ିଆ ଜଙ୍ଗଲର ଉପରଭାଗରେ ଥିବା ପଥୁରିଆ ତୃଣାଚ୍ଛାଦିତ ଅଞ୍ଚଳରେ ଏମାନଙ୍କୁ ଦେଖିବାକୁ ମିଳେ ।

## ଇବେକ୍ସ

*Capra ibex* (Linnaeus)

ଏହା ହିମାଳୟ ପାର୍ବତ୍ୟଅଞ୍ଚଳରେ ଦେଖାଯାଉଥିବା ଅନ୍ୟଏକ ସୁଗଠିତ ରମଣୀୟ ଛେଳି । ଅଣିରା ଛେଳିର ଲମ୍ବଦାଢ଼ି ଓ ଚେପ୍ଟା ହୋଇ ପଛ ଆଡ଼କୁ ବଙ୍କେଇ ଆସିଥିବା ଲମ୍ବ ଶିଙ୍ଗ ଥାଏ । ମାଈ ଛେଳିଙ୍କ ଶିଙ୍ଗଗୁଡ଼ିକ ଛୋଟ । ଋତୁ ଅନୁସାରେ ଇବେକ୍ସ ଛେଳିଙ୍କ ଦେହର ରଙ୍ଗ ବଦଳେ । ଶୀତଦିନେ ଏମାନେ ସାମାନ୍ୟ ଧୂସରମିଶା ହଳଦିଆ ଦିଶନ୍ତି । ଗ୍ରୀଷ୍ମ ଋତୁରେ ଅଣିରା ଛେଳିଙ୍କ ଦେହର ରଙ୍ଗ ଗାଢ଼ବାଦାମୀ ଦେଖାଯାଏ, ଯହିଁରେ ଛାପିଛାପିକା ଧଳାଦାଗ ଥାଏ । ମାତ୍ର,



ଏସମୟରେ ମାଈଛେଳିଙ୍କ ରଙ୍ଗ ହଳଦିମିଶା ବାଦାମୀ ହୋଇଥାଏ ।

ଏ ପ୍ରକାର ଛେଳି ହିମାଳୟ ପର୍ବତମାଳାର 2500ରୁ 7000ମିଟର ଉଚ୍ଚତାରେ ଦେଖାଯାଆନ୍ତି । ଏମାନଙ୍କ ଦେହରୁ ସର୍ବୋତ୍କୃଷ୍ଟ କିସମର ପଶମ ମିଳେ, ଯହିଁରେ ବିଖ୍ୟାତ ପଶ୍ମିନା ଶାଲ୍, ମୋଜା, ହାତମୋଜା, ବା ଦସ୍ତାନା ଆଦି ତିଆରି ହୁଏ ।

## ମାର୍ଖୋର

*Capra falconeri* (Wagner)

ଏହା ଏକ ପ୍ରକାଣ୍ଡକାୟ ଜଙ୍ଗଲି ଛେଳି । ଦେହରେ ତାର ଓହଳିଆ ରେଶମି ଲୋମ ଭରି ରହିଥାଏ । ଅଣିରା ମାର୍ଖୋରର ପାଚିଲିଆ ଦାଢ଼ି ତା ଆଣ୍ଠୁ ପର୍ଯ୍ୟନ୍ତ ଓହଳିଥାଏ । ମାତ୍ର, ମାଈ ମାର୍ଖୋରର ଓଠତଳୁ ଅଳ୍ପକରି ଦାଢ଼ିଥାଏ । ଅଣିରା ଛେଳିର ଶିଙ୍ଗ ଗୁଡ଼ିକ ଚେପ୍ଟାହୋଇ ପେଚଭଳି କୁଣ୍ଡଳାକାରରେ ବଙ୍କା ହୋଇଯାଇଥାଏ । ମାର୍ଖୋରର ଘନ ଲୋମଯୁକ୍ତ ଦେହଟା ଶୀତଋତୁରେ ପାଚିଲିଆ ହୋଇ ଲୁହା ପରି ଢଙ୍ଗ ରଙ୍ଗ ଦେଖାଯାଏ । ମାତ୍ର, ଖରାଦିନେ ଏହି ଘନ ଲୋମ ଝଡ଼ିଯାଇ ଛୋଟ ନାଲିମିଶା ବାଦାମୀ ରଙ୍ଗଯୁକ୍ତ ଲୋମରେ ଏହାର ଦେହସାରା ଭରିଯାଏ ।

କାଶ୍ମୀର ସହିତ ହିମାଳୟ ପଶ୍ଚିମାଞ୍ଚଳର 600 ରୁ 3600 ମିଟର ଉଚ୍ଚତାରେ ପଲପଲ ମାର୍ଖୋର୍ ବାସ କରନ୍ତି । ପ୍ରତିପଲରେ 12ରୁ 50 ପର୍ଯ୍ୟନ୍ତ ମାର୍ଖୋର ଥିବାର ଦେଖାଯାଏ ।





ଚୌସିଙ୍ଗା (ପୃ 48 ଦେଖନ୍ତୁ)



ମଣିପୁରୀ ହରିଣ (ପୃ 49 ଦେଖନ୍ତୁ)

## ହିସ୍ପିଡ ଠେକୁଆ

*Caprolagus hispidus* (Pearson)

ଏହି ଠେକୁଆ ଦେହରେ ଗାଢ଼ ବାଦାମୀରଙ୍ଗର ମୋଟା ଟାଆଁସା ଲୋମ ଥାଏ । ମାତ୍ର, ଛାତି ଓ ଲାଞ୍ଜର ରଙ୍ଗ ସାମାନ୍ୟ ବାଦାମୀରୁ ଦେହର ତଳଆଡ଼କୁ ପୂରା ଧଳା ଦେଖାଯାଏ । ସାଧାରଣ ଜଙ୍ଗା ବେକିଆ ଠେକୁଆଠାରୁ ଏମାନଙ୍କର କାନଗୁଡ଼ିକ ଛୋଟ । ଅତୀତରେ ଆସାମ, ପଶ୍ଚିମବଙ୍ଗ, ତ୍ରିପୁରା ଓ ଉତ୍ତରପ୍ରଦେଶର ତରାଇ ଅଞ୍ଚଳରେ ଘାସ ଜଙ୍ଗଲ ମାନଙ୍କରେ ବାସ କରୁଥିବା ଏଜାତିର ଠେକୁଆମାନେ ଏବେ କେବଳ ପଶ୍ଚିମବଙ୍ଗ ଓ ଆସାମରେ ଦେଖିବାକୁ ମିଳୁଛନ୍ତି । ଏହି ଅଳ୍ପବେଗରେ ଧାଉଁଥିବା ଠେକୁଆମାନେ ଗଛର ପତ୍ର, ଗଛା, ମୂଳ ଓ ବଲ୍କ ଇତ୍ୟାଦି ଖାଆନ୍ତି । ଏମାନେ ବର୍ଷକୁ ଦୁଇ ତିନିଥର ଛୁଆ ଜନ୍ମ କରନ୍ତି । ଏହାର ଅସାଧାରଣ ହଜମ-ଯନ୍ତ୍ର ଖାଦ୍ୟ ସଂରକ୍ଷିବାରେ ସାହାଯ୍ୟ କରେ । ପେଟରୁ ଝାଡ଼ା ସହିତ ମିଶି ଅଧା ହଜମ ହୋଇଥିବା ଖାଦ୍ୟ ବା ପାକଘଟୀ ଗୋଟିକା ତଳ ଏହି ଠେକୁଆ ଖାଇ ଦିଏ । ଦ୍ୱିତୀୟବାର ହଜମହେବା ଫଳରେ ଖାଦ୍ୟରୁ ମୂଲ୍ୟବାନ ଖାଦ୍ୟପ୍ରାଣତଜ ସେ ପୁନଃ-ଆହରଣ କରେ ।

ସଂଗମପରେ ମାଈ ଠେକୁଆର ଡିମ୍ବାଣୁ କ୍ଷରଣ ହୁଏ । ଫଳରେ ଗର୍ଭଧାନ ସୁନିଶ୍ଚିତ ହୋଇଥାଏ । ଏଥିରୁ ଏହାର ପ୍ରଜନନ ଶକ୍ତି କେତେ ପ୍ରଖର, ତାହା ଜଣାପଡ଼େ ।

## ପକ୍ଷୀଜଗତ

ସ୍ଥାନ ପରିବର୍ତ୍ତନର ଦୁର୍ବୋଧ୍ୟ ତଥ୍ୟଠାରୁ ଆରମ୍ଭ କରି ନୀଡ଼ ପ୍ରସ୍ତୁତିର ଅଦ୍ଭୁତ କାର୍ଯ୍ୟ ସହିତ ରଙ୍ଗ, ସୌନ୍ଦର୍ଯ୍ୟ, ପ୍ରେମ ଓ ମଧୁର ସ୍ୱନ ଆଦିରେ ପକ୍ଷୀ ଜଗତ ଭରପୂର ହୋଇ ରହିଛି । ପକ୍ଷୀମାନେହିଁ ଏକମାତ୍ର ପର ଥିବା ପ୍ରାଣୀ । ସେମାନଙ୍କ ଆଗଗୋଡ ଦୁଇଟି ଡେଣାରେ ରୂପାନ୍ତରିତ ହୋଇଛି, ଯାହାକି ସେମାନଙ୍କୁ ଉଡ଼ିବା ପାଇଁ ସକ୍ଷମ କରାଇଛି ।

ଚଉଦ କୋଟି ବର୍ଷ ପୂର୍ବେ ମେସୋଜୋଇକ୍ ଯୁଗରେ ସରୀସୃପ ମାନଙ୍କ ଠାରୁ ସୃଷ୍ଟ ଏହି ପକ୍ଷୀବଂଶର ବିସ୍ଫୋରଣ ଘଟି ପୃଥିବୀସାରା ବିକ୍ଷିପ୍ତ ଭାବରେ ମାଡିଯାଇଛି । ସେମାନଙ୍କର ଅଶେଷ ରକମର ଆକାର, ରଙ୍ଗ ଓ ପ୍ରକୃତି ଆଦି ପରିଲକ୍ଷିତ ହୁଏ । ପ୍ରତି ମହାଦେଶର ପ୍ରତ୍ୟେକ କୋଣ ଅନୁକୋଣ ଅଧିକାର କରି ସେମାନେ ରହିଛନ୍ତି । ପୃଥିବୀରେ ଅଛନ୍ତି ପ୍ରାୟ ୮୬୦୦ ଜାତିର ପକ୍ଷୀ । ହୁଏତ, ଆଉ କେତେ ଡଜନ ପକ୍ଷୀ ଏବେ ମଧ୍ୟ ଅନାବିଷ୍କୃତ ଭାବରେ ରହିଅଛନ୍ତି । ଏହି ବିଶାଳ ଜୀବ ମହାକାଶରେ ପ୍ରକାଣ୍ଡ ଛାୟାପଥ ଭଳି ବ୍ୟାପୀ ରହିଥିବା ପକ୍ଷୀଜଗତକୁ ବିଶେଷଜ୍ଞମାନେ 27ଟି ବଂଶ (order)ରେ ବିନ୍ୟସ୍ତ କରି ସେ ସବୁକୁ ପୁନଶ୍ଚ 155ଟି ପରିବାର (Family)ରେ ବିଭକ୍ତ କରିଛନ୍ତି ।

ଆର୍କିଓଟେରିକ୍ସ ବାଭେରିଆନ୍ ଜୀବାଶ୍ମରୁ ପ୍ରାରମ୍ଭିକ ଯୁଗରେ ବାସକରୁଥିବା ପକ୍ଷୀର

ସନ୍ଧାନ ମିଳେ । ଏହି ପ୍ରସ୍ତରୀଭୂତ କଙ୍କାଳରୁ ହାଲୁକା ପୋଲା ହାଡ଼କୁ ଘେରି ରହିଥିବା ପରଚିହ୍ନ ମାନ ପରିଷ୍କାର ଦେଖାଯାଏ । ଏହାଛଡ଼ା ଦାନ୍ତ, ପନ୍ଝା, ଡେଣା ଓ ଏକ ଲମ୍ବ ସରୀସୃପ ଆକୃତିର ଲାଞ୍ଜସାରା ପର ଢ଼ାଙ୍କି ହୋଇ ରହିଥିବାର ଚାବାଶ୍ଚ ସଂରକ୍ଷିତ ହୋଇ ରହିଛି । ଏହି ତଥ୍ୟ ମେସୋଜୋଇକ୍ ଯୁଗର କ୍ଷୁଦ୍ର ସରୀସୃପଠାରୁ କିଭଳି ପ୍ରଥମ ପକ୍ଷୀର ଉଦ୍ଭବ ଘଟିଲା, ତାହା ଦର୍ଶାଇ ଦିଏ । ଟିକି ଦଶ ପଇସିଠାରୁ କମ୍ ଓଜନର କୁନି ହମିଂ ଚଢ଼େଇ (Humming bird) ଠାରୁ ଆରମ୍ଭ କରି 135 କିଲୋଗ୍ରାମ୍‌ରୁ ଅଧିକ ଓଜନଦାର ଓଟପକ୍ଷୀ ପର୍ଯ୍ୟନ୍ତ ସବୁ ରକମର ଚଢ଼େଇ ପକ୍ଷୀଜଗତର ଅନ୍ତର୍ଭୁକ୍ତ ।

ପକ୍ଷୀ ଶରୀରଟି ଏକ ଦକ୍ଷ ଉଡ଼ନ୍ତା ଯନ୍ତ୍ର ଭାବରେ ସୃଷ୍ଟି ହୋଇଛି । ହାଲୁକା ଓଜନର କଙ୍କାଳ, ଶକ୍ତିଶାଳୀ ମାଂସପେଶୀ ଓ ପର ସାହାଯ୍ୟରେ ସେମାନେ ଉଡ଼ି ପାରୁଛନ୍ତି । ପକ୍ଷୀର ଥଣ୍ଟଗୁଡ଼ିକ ମଧ୍ୟ ନିର୍ଦ୍ଦିଷ୍ଟ କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ ବିଶେଷ ଭାବେ ପରିକଳ୍ପିତ ହୋଇଛି । ମାଂସ ଛିଡ଼ାଇ ଖାଇବା ପାଇଁ ଛଞ୍ଚାଣର ହୁକପରି ସୁଦକ୍ଷ ଥଣ୍ଟ ଅଛି । ଏରାପକ୍ଷୀ (Flamingo) ଓ ଚାମୁଚ ଥଣ୍ଟିଆ (Spon bill) ଗେଣ୍ଡାଳିଆ ମାନଙ୍କର ଥଣ୍ଟ କାଦୁଅଛଣା ଯନ୍ତ୍ର ପରି କାମ କରେ । କାଠ ହଣା ଚଢ଼େଇ ଥଣ୍ଟ ଦାଠ କାଟିବା ଲାଗି ଅତି ଦମ୍ଭ ଓ ଶକ୍ତିଶାଳୀ । ଶୁଆର ମଞ୍ଜି କାଟିବା ପାଇଁ କତୁରୀ ପରି ଥଣ୍ଟ ଅଛି ଓ କୋଚିଳାଖାଇର ଆତ୍ମରକ୍ଷା ଓ ଆକ୍ରମଣ ଲାଗି ଏକ ସୁନ୍ଦର ଓ ବିରାଟ ଥଣ୍ଟ ଅଛି ।

ଥଣ୍ଟ ଭଳି ପକ୍ଷୀମାନଙ୍କ ପାଦରେ ମଧ୍ୟ ଭିନ୍ନତା ଅଛି । ଧାଇଁବା, ବିଶ୍ରାମ ନେବା, କାଦୁଅରେ ଚାଲିବା, ଆମ୍ପୁଡ଼ିବା, ଧରିବା ଓ ପହଁରିବା ଭଳି କେତେକ କାର୍ଯ୍ୟ କରିବା ପାଇଁ ସେମାନଙ୍କର ପାଦ ଉଦ୍ଦିଷ୍ଟ ।

ପକ୍ଷୀମାନଙ୍କର ସର୍ବୋତ୍କୃଷ୍ଟ ଦୃଷ୍ଟିଶକ୍ତି ଓ ଚମତ୍କାର ଶ୍ରୁତିଶକ୍ତି ଅଛି । ପେଚାମାନଙ୍କ ଆଖି ଆଲୁଅ ପ୍ରତି ଅତିଶୟ କାତର । ମଣିଷ ଦରକାର କରୁଥିବା ଆଲୋକର ଏକ ଶତାଂଶ ପ୍ରଖରତା (0.00000073 Footcandles) ରେ ସେ ତାର ଶିକାରକୁ ଦେଖିପାରେ । ବାଜ ବା ଶ୍ୟେନ ପକ୍ଷୀର ଦୃଷ୍ଟି ଶକ୍ତି ମଣିଷ ଦୃଷ୍ଟି ଶକ୍ତିର ଆଠଗୁଣ ବୋଲି ହିସାବ କରାଯାଏ, ଯଦ୍ଵାରା ସେ ଏକ ମାଇଲରୁ ବେଶିଦୂରରୁ ପରିଷ୍କାର ଦେଖିପାରେ ।

ମଣିଷର ଶ୍ରୁତିଶକ୍ତି ତୁଳନାରେ ପକ୍ଷୀମାନଙ୍କ ଶ୍ରୁତିଶକ୍ତି ମଧ୍ୟ ଯଥେଷ୍ଟ ଉନ୍ନତ । ସ୍ୱରତୀକ୍ଷ୍ଣତାର ଦ୍ରୁତ ପରିବର୍ତ୍ତନ ଅନୁଯାୟୀ ପ୍ରଭାବିତ ହେଲାଭଳି ଶ୍ରୁତିଶକ୍ତି ପକ୍ଷୀମାନଙ୍କର ଅଛି ।

କେତେ ଜାତିର ପକ୍ଷୀଙ୍କ ଜୀବନରେ ସ୍ଥାନ ପରିବର୍ତ୍ତନ ହେଉଛି ଅତି ଦୁଃସାହସିକ କାର୍ଯ୍ୟ । ଦୂର ଦୂରାନ୍ତକୁ ଉଡ଼ିଯିବା ଲାଗି ସେମାନଙ୍କର ଯଥେଷ୍ଟ ବଳ ଅଛି । ଏଥିଲାଗି ଯଥେଷ୍ଟ ଶକ୍ତି ଯୋଗାଇବା ଭଳି ଆବଶ୍ୟକୀୟ ଚର୍ବି ସେମାନଙ୍କ ଦେହରେ ସଞ୍ଚିତ ହୋଇଥାଏ । ମାତ୍ର ସେମାନେ ଯେଉଁପରି ଠିକ୍ ବାଟଖୋଜି ଉଡ଼ିଯାଇ ପାରନ୍ତି ତାହାହିଁ ହେଉଛି ସବୁଠାରୁ ଆଶ୍ଚର୍ଯ୍ୟ ବ୍ୟାପାର । ଧଳା ଗେଣ୍ଡାଳିଆ (White stork) ୟୁରୋପୀୟ ଚାମୁଚ ଥଣ୍ଟିଆ ଗେଣ୍ଡାଳିଆ (European Spoon bill) ହନିବଜାର୍ଡ଼ (Honny buzzard), ଲେସର୍, କୁକୋ, ସାଇବେରିଆ ବର

(Siberian Crane) ଆଦି ଶୀତଋତୁରେ ଉତ୍ତର ଗୋଲାର୍ଦ୍ଧରୁ ଭାରତକୁ ଆସୁଥିବା କେତେକ ପରିଦର୍ଶକ ।

ସଂଖ୍ୟାର ପ୍ରାଚୁର୍ଯ୍ୟ ଓ ପ୍ରକାର ଭେଦରେ ଭାରତୀୟ ବାୟବ୍ୟ ପ୍ରାଣୀ ସମ୍ପଦ ଯଥେଷ୍ଟ ବିଶେଷଣୀୟ । 27 ଗୋଟି ପ୍ରାକୃତିକ ଶୃଙ୍ଖଳା ବା (Order)ଅର୍ଡ଼ରରେ ବିଭକ୍ତ ପୃଥିବୀର ସମସ୍ତ ପକ୍ଷୀମାନଙ୍କ ମଧ୍ୟରୁ 21ଟି ଶୃଙ୍ଖଳାର (Order)ପକ୍ଷୀ ଭାରତୀୟ ପକ୍ଷୀ ସମ୍ପଦର ଅନ୍ତର୍ଭୁକ୍ତ । ଭାରତରେ ଥିବା 1200 ଜାତିର ପକ୍ଷୀ ହେଉଛନ୍ତି ସମଗ୍ର ପୃଥିବୀର 8600 ଜାତି ପକ୍ଷୀଙ୍କର 14ଶତାଂଶ । ଗୌରଳିକ ଗୋଷ୍ଠୀ ଓ ସେମାନଙ୍କର ଉପଗୋଷ୍ଠୀକୁ ନେଇ ଭାରତର 2060 ପ୍ରକାରର ସ୍ଥଳ ଓ ଜଳଚର ପକ୍ଷୀ ଅଛନ୍ତି । ଏତେ ସଂଖ୍ୟକ ପକ୍ଷୀ ମଧ୍ୟରୁ ଆମ ଚୌହଦି ଭିତରେ 1750 ପ୍ରକାରର ବସବାସ କରନ୍ତି ଓ ଅନ୍ୟମାନେ ହେଉଛନ୍ତି ଯାଯାବର ଶ୍ରେଣୀର ।

ଭାରତର ସବୁପ୍ରକାର ଆବାସିକ ସ୍ଥଳରେ ପକ୍ଷୀମାନଙ୍କୁ ଦେଖିବାକୁ ମିଳେ । ଦେଶର ସବସବିଆ ଜଳଜମି ମାନଙ୍କରେ ହଂସ, ରାଜହଂସ, କାଣି ବଗ, ଡ଼ାହୁକ୍‌ପକ୍ଷୀ, ଲମ୍ବବେଜିଆ ପାଣିକୁଆ ଓ ମାଛରଙ୍କା ଚଢ଼େଇ ଏବଂ ତୃଣଭୂମି ମାନଙ୍କରେ ତିତିରି, ଗୁଣ୍ଡୁରି, ଓ୍ୱାର୍ବଲର (Warblers) ଓ ଡାହୁକ (Shrikes)ଆଦି ଦେଖାଯାଆନ୍ତି ।

ଗ୍ରୀଷ୍ମମଣ୍ଡଳୀୟ ଅରଣ୍ୟ ହେଉଛି କୋଚିଲାଖାଇ, ଶାରୀ, ହରଡ଼ଚଢ଼େଇ, ବଣ କୁକୁଡ଼ା ଇତ୍ୟାଦି ପକ୍ଷୀମାନଙ୍କ ବାସସ୍ଥଳୀ । କାଠହଣା, ଟିକିଚଢ଼େଇ(Tits), ମିନିଭେଟ୍ (Minivet), ବାବ୍‌ଲର (Babbler) ଆଦି ପକ୍ଷୀ ପତ୍ରଝଡ଼ା ଜଙ୍ଗଲ ମାନଙ୍କରେ ଦେଖାଯାଆନ୍ତି । ପାହାଡ଼ିଆ ପାଇନ୍ ଜଙ୍ଗଲ ମାନଙ୍କରେ କଇଞ୍ଚ ଲେଞ୍ଜାଳିଆ (Cross bill), ମଞ୍ଜିଖିଆ (Nuthatchs), ଛଇଛଉକା କାଉ (Magpies) ଓ ବାର୍‌ବେଟ୍ (Barbets) ଆଦି ପକ୍ଷୀ ବାସ କରନ୍ତି । ଭାରତୀୟ ମରୁଭୂମି ମାନଙ୍କରେ ବାଲିତିତିରି, ବଷ୍ଟାର୍ଡ଼ (Bustard), କାଉସର (Courser), କପୋତ ଓ ବାରମାସୀ ଚଢ଼େଇମାନେ ମଧ ବଞ୍ଚି ରହିଛନ୍ତି ।

ତେବେ ମାନବିକ କାର୍ଯ୍ୟକଳାପ ଦ୍ୱାରା ଜଙ୍ଗଲ ନଷ୍ଟ ହେବା ଫଳରେ ପ୍ରଦୂଷଣ ଓ ବାସସ୍ଥଳୀର ବିଧ୍ୱଂସନ ହେତୁ ନାନା ଜାତିର ପକ୍ଷୀମାନେ ଏବେ ଦୁଷ୍ପ୍ରାପ୍ୟ ଓ ବିପଦାପନ୍ନ ହୋଇପଡ଼ିଛନ୍ତି । ପକ୍ଷୀ ସଂରକ୍ଷଣ ଦିଗରେ କଠୋର ପ୍ରଚେଷ୍ଟା ହିଁ ଆଜିର ଆବଶ୍ୟକତା ।

## କାଉସର୍

*Cursorius bitorquatus* (Blyth)

ଏ ଜାତିର ଚଢ଼େଇ ପୃଥିବୀରେ କ୍ୱଚିତ୍ ଦେଖିବାକୁ ମିଳେ । 1900 ମସିହା ପୂର୍ବରୁ ଲୁପ୍ତ ହୋଇଥିବାର ବିଶ୍ୱାସ କରାଯାଉଥିବା ଏକ ଜାତିର ପକ୍ଷୀ ସଂପର୍କରେ କୌତୁହଳପ୍ରଦ ଘଟଣାର ଏହା ପ୍ରତିନିଧିତ୍ୱ କରେ । 1986 ମସିହା ଜାନୁଆରୀ ମାସରେ ବମ୍ବେ ପ୍ରାକୃତିକ ଇତିହାସ ସମିତି ପକ୍ଷରୁ ଏହାକୁ ଆନ୍ଧ୍ରପ୍ରଦେଶର ଗୋଦାବରୀ ଉପତ୍ୟକାରେ ପୁଣି ଆବିଷ୍କାର କରାଯାଇଥିଲା ।

ଏଇ ଚଢ଼େଇର ହଳଦୀମିଶା ମାଟିଆରଙ୍ଗର ଚୁଳିଚୁଳି ପର ଅଛି । ମୁଣ୍ଡରେ ଗାଢ଼ ବାଦାମୀରଙ୍ଗର ଚୂଳ ଓ ବେକ ପଛପଟେ ଥିବା ଧଳାରଙ୍ଗର ଝାଲରି ପର ସବୁ ମାଳିପରି ବେକକୁ ବେଢ଼ି ରହିଥାଏ । ବେକ ଓ ଥଣ୍ଟତଳେ ଈଷତ୍ ଧଳା ଓ ପେଟତଳେ ମାଟିଆ ମିଶା ଧଳାରଙ୍ଗର ପର ଥାଏ । ଗୋଡ଼ଟାର ରଙ୍ଗ ଧଳାକଳା ମିଶା । ଆନ୍ଧ୍ରପ୍ରଦେଶର ଗୋଦାବରୀ ଉପତ୍ୟକାରେ ଥିବା ଅନନ୍ତପୁର, କୁଡ଼ାପା, ନେଲୋର ଓ ଭଦ୍ରାଚଳମ୍ ନିକଟବର୍ତ୍ତୀ ମହାରାଷ୍ଟ୍ରର ସିରୋଞ୍ଚା ଅଞ୍ଚଳରେ ଏହି ପକ୍ଷୀ ଥିବାର ଜଣାଯାଏ ।

## ଭାରତୀୟ ବଷ୍ଟାର୍ଡ଼ ପକ୍ଷୀ

*Ardeotis nigriceps* (Vigors)

ଏହା ଏକ ଓଜନଦାର ଭୂଚର ପକ୍ଷୀ । ଆକାରରେ ସାନ ଓଟପକ୍ଷୀଟିଏ ପରି । ଏହାର ଗାଢ଼ ହଳଦୀ ମିଶା ବାଦାମୀରଙ୍ଗ ଡେଣାର ଧାର ଋଚିକ ଧଳାରଙ୍ଗର । ମୁଣ୍ଡରେ କଳାରଙ୍ଗର ଚୂଳ ଅତି ସୁନ୍ଦର । ଲମ୍ବ ବେକଟା ଦେଖିବାକୁ ଧଳା ଓ ଧଳାରଙ୍ଗର ପେଟତଳ ହେଉଛି ଏ ପକ୍ଷୀର ସ୍ୱତନ୍ତ୍ର ଲକ୍ଷଣ । ବଙ୍ଗ, ଆସାମ ଓ ମହିଶୂର ଦକ୍ଷିଣାଞ୍ଚଳ ଛଡ଼ା ସମଗ୍ର ଦେଶସାରା ବିକ୍ଷିପ୍ତ ଭାବେ ଦେଖାଯାଉଥିବା ଭାରତୀୟ ବଷ୍ଟାର୍ଡ଼ ପକ୍ଷୀ ଏବେ ମୁଖ୍ୟତଃ ରାଜସ୍ଥାନ, ଗୁଜୁରାଟ ଓ ମହାରାଷ୍ଟ୍ରର ଅହମ୍ମଦ ନଗର ଜିଲ୍ଲାରେ ଥିବା ଶୁଷ୍କ ଓ ଅର୍ଦ୍ଧଶୁଷ୍କ ଅଞ୍ଚଳମାନଙ୍କରେ ସୀମିତ ଭାବେ ଅଛନ୍ତି ।



## ରାଜ କୋଚିଲାଖାଇ

*Buceros bicornis homrai* (Hodgson)

ଏହା ଦେଖିବାକୁ ପ୍ରାୟତଃ ଗୋଟିଏ ଶାଗୁଣା ଭଳି ପକ୍ଷୀ । ଶିଙ୍ଗପରି ଏହାର ଗୋଟିଏ ବଡ଼ ଥଣ୍ଟ ଅଛି । ଏହି ଥଣ୍ଟ ଉପରେ ଶିରସ୍ତ୍ରାଣ ଭଳି "U" ଆକୃତିର ଅର୍ଦ୍ଧବର୍ତ୍ତୁଳ ଚୂଳଟିଏ ଥାଏ । ପକ୍ଷୀଟିର ମୁହଁ, ପିଠି ଓ ଘୋଡ଼େଇ ହୋଇ ରହିଥିବା ଅଙ୍ଗ ଦେଖିବାକୁ କଳା । ଦେହସାରା କଳା, ଧଳା ଛାପିଛାପିକା ରଙ୍ଗର । ବେକ ଓ ତଳିପେଟ ଧଳା ଓ ଗୋଡ଼ଟା ପଟିପଟି ଧଳାକଳା ରଙ୍ଗର ।

ଏ ଜାତିର ପକ୍ଷୀ ପଶ୍ଚିମଘାଟ ପର୍ବତ ଅଞ୍ଚଳରେ କେରଳ ପର୍ଯ୍ୟନ୍ତ ଓ ହିମାଳୟ

ପର୍ବତମାଳାର ନିମ୍ନାଂଶରେ ଅରୁଣାଚଳ ପ୍ରଦେଶ ସହିତ ଦେଶର ଉତ୍ତର ପୂର୍ବାଞ୍ଚଳରେ ଦେଖାଯାଏ । ଫଳ, କୋଳି ଓ ଡିମିରିଫଳ ଆଦି ଏହାର ପ୍ରଧାନଖାଦ୍ୟ । ଏହାଛଡ଼ା ଢାଡ଼, ଝିଣ୍ଟିପିଟି, ମୂଷା, ଚଢ଼େଇ ଛୁଆ ଆଦି ଛୋଟ ଜୀବଜନ୍ତୁ ମାନଙ୍କୁ ମଧ୍ୟ ଏହି ପକ୍ଷୀ ଆହାର କରେ ।

## ଲାଞ୍ଜପୁଚ୍ଛି ଚଢ଼େଇ

*Sypheotides indica* (J. F. Miller)

ଦେଶସାରା ତୃଣଭୂମି ଓ ବୁଦିବୁଦିକିଆ ଜଙ୍ଗଲ ଥିବା ଅଞ୍ଚଳମାନଙ୍କରେ ଏ ଜାତିର ପକ୍ଷୀମାନେ ବାସ କରନ୍ତି । ମାତ୍ର ବାସସ୍ଥଳୀର ବିଲୋପ ଏବଂ ମାଂସ ପାଇଁ ଶିକାର ଦାଉରେ ଏମାନଙ୍କର ସଂଖ୍ୟା ଆଶାତୀତ ଭାବେ ହ୍ରାସ ପାଉଛି । ସଙ୍ଗମ ଋତୁରେ ଅଣ୍ଡିରା ଚଢ଼େଇର ମୁଣ୍ଡ, ବେକ ଓ ପେଟତଳେ କଳାରଙ୍ଗର ପର ହୁଏ । ଡେଣାର ରଙ୍ଗ ଛାପିଛାପିକା କଳା ଆଉ ପିଙ୍ଗଳବର୍ଣ୍ଣ ଏବଂ ଶରୀରର ଦୁଇପାଖ ଧଳାରଙ୍ଗ ହୋଇଥାଏ । ମୁଣ୍ଡର ଚୂଳ ବା ମୁକୁଟରେ ଥିବା ପର କୃଷ୍ଣବର୍ଣ୍ଣର । ପୁରୁଷ ପକ୍ଷୀ ଅପେକ୍ଷା ମାଈମାନେ ଆକୃତିରେ ବଡ଼ ଏବଂ ହଳଦୀ ମିଶା ବାଦାମୀ ଓ କଳା ଛାପିଛାପିକା ରଙ୍ଗର ହୋଇଥାଆନ୍ତି ।



## ପଶ୍ଚିମା ଟ୍ରାଗୋପାନ୍

*Tragopan melanocephalus* (J. E. Gray)

ଏହା ଏକ ଉଙ୍ଗାନ୍ କୁକୁଡ଼ା ଜାତୀୟ ପକ୍ଷୀ । ଅଣ୍ଡିରା ଚଢ଼େଇଟି ଦେଖିବାକୁ ଗାଢ଼ ଲାଲ୍ ଓ ତା ଦେହସାରା ଗୋଲ ଗୋଲ ଧଳା ଦାଗମାନ ଅଛି । ଏ ପକ୍ଷୀର ମୁହଁରେ ଥିବା ଚମଡ଼ାର ରଙ୍ଗ ଲାଲ୍, ଯହିଁରେ ଆଦୌ ପର ନଥାଏ । ମାତ୍ର ଏହାର ବେକରେ ଗାଢ଼ ନୀଳରଙ୍ଗର ପର ଥାଏ । ମାଈ ଚଢ଼େଇର ରଙ୍ଗ ପାଉଁସିଆ ଓ ଦେହସାରା ଧଳାକଳା ରଙ୍ଗର ଦାଗମାନ ଥାଏ । ଏହି ଜାତିର ପକ୍ଷୀ ଏକଦା ହିମାଳୟ ପାର୍ବତ୍ୟଅଞ୍ଚଳରେ ବାଣ୍ଟି ହୋଇ ରହିଥିଲେ । ମାତ୍ର ଏବେ କେବଳ କାଶ୍ମୀର ଓ ହିମାଚଳ ପ୍ରଦେଶରେ ଦେଖାଯାଉଛନ୍ତି । ବାସସ୍ଥଳୀ ଧ୍ୱଂସ ପାଇବା ଯୋଗୁଁ ଏମାନଙ୍କର ସଂଖ୍ୟା ସାଂଘାତିକ ଭାବରେ ହ୍ରାସ ପାଉଛି ।

## ହିମାଳୟ ମୋନାଲ ଫେଜାଣ୍ଟ

*Lophophorus impejanus* (Latham)

ଚିକ୍‌ଚିକ୍ ଧାତୁଆରଙ୍ଗ ପରପୁକ୍ତ ଅଣିରା ମୋନାଲ ଫେଜାଣ୍ଟ ଦେଖିବାକୁ ବେଶ୍ ଦିପ୍ତିମାନ୍ । ମୁଣ୍ଡରେ ଧାତୁଆରଙ୍ଗର ଲମ୍ବା ଚୂଳ ଅଛି । ବେକ ବା ରଙ୍ଗର ରଙ୍ଗ ବାଇଗଣି । ମାଈ ଚଢ଼େଇ ଦେହଟା ବାଦାମୀ, ଯହିଁରେ ଗାଢ଼ ଓ ଫିକା ବାଦାମୀ ରଙ୍ଗର ଡ଼ୋରିଆ ଦାଗମାନ ଥାଏ । ମୋନାଲ ପକ୍ଷୀମାନଙ୍କର ସଂଖ୍ୟା ହ୍ରାସ ପାଇ ଏବେ କେବଳ ହିମାଚଳ ପ୍ରଦେଶର କେତେ ଅଞ୍ଚଳରେ ତାହା ସୀମିତ ।

## ହସକୁରା କୁକୁଡ଼ା

*Catreus wallichii* (Hardwicke)

ଲମ୍ବଲାଞ୍ଜ ଓ ସରୁହୋଇ ପଛକୁ ଥିବା କଳାମିଶା ବାଦାମୀ ରଙ୍ଗର ଚୂଳ ପୋଇଁ ହସକୁରା କୁକୁଡ଼ା ଅନ୍ୟମାନଙ୍କ ଠାରୁ ବାରି ହୋଇ ପଡ଼େ । ଦେହରେ ପିଙ୍ଗଳାର ଧଳା ଓ ଗଟାଳିଆରଙ୍ଗର ପର



ଉପରେ ଲାଗିଲାଗି କଳା ଓ ଡ଼ୋରିଆ ଦାଗମାନଥାଏ । ମାଈଚଢ଼େଇଟି ଦେଖିବାକୁ ଠିକ୍ ଅଣିରା ଭଳି, ମାତ୍ର ଆକାରରେ ଟିକେ ସାନ । ଏକଦା କାଶ୍ମୀର, ପଞ୍ଜାବ ଓ ହିମାଚଳ ପ୍ରଦେଶ ଓ ଉତ୍ତରପ୍ରଦେଶର ଗଡ଼୍‌ୱାଲ ଓ କୁମାୟୁଁ ଅଞ୍ଚଳରେ ଦେଖାଯାଉଥିବା ଏ ଜାତୀୟ ପକ୍ଷୀ ସଂଖ୍ୟା ଆଜିକାଲି ଗୁରୁତର ଭାବରେ ହ୍ରାସ ପାଇଛି ।

## ସାଇବେରିଆ ବଗ

*Grus leucogeranus* (Pallas)

''ଗ୍ରୁଇଫର୍ମିସ୍'' ନାମକ ଶ୍ରେଣୀ ବିନ୍ୟାସ ଅନ୍ତର୍ଭୁକ୍ତ ଏକ ଜାତିର ପକ୍ଷୀ ହେଉଛି ''ସାଇବେରିଆ ବଗ'', ଯେଉଁମାନେ କି ସନ୍ତସନ୍ତିଆ ଭୂଭାଗରେ ବାସ କରନ୍ତି । ଏମାନେ ଉଡ଼ିବାରେ ସେତେ ଦକ୍ଷ

ନୁହନ୍ତି, ମାତ୍ର ଜଳଭୂମିରେ ରହିବା ପାଇଁ ଉପଯୁକ୍ତ । ଉତ୍ତର ସାଇବେରିଆରୁ ଶୀତକାଳୀନ ପରିଦର୍ଶକ ଭାବରେ ଏମାନେ ଭାରତକୁ ଆସନ୍ତି । ନଭେମ୍ବର ଶେଷ ଓ ଡିସେମ୍ବର ପ୍ରଥମ ଭାଗ ମଧ୍ୟରେ ଏମାନେ ଉତ୍ତର ବିହାର, ଉତ୍ତରପ୍ରଦେଶର ପ୍ରୟାଗପୁର ହ୍ରଦ ଓ ଭରତପୁର ସ୍ଥିତ କେବଲାଦେଓ ଘାନା ଜାତୀୟ ପାର୍କରେ ପହଞ୍ଚି ଯାଆନ୍ତି । ମାର୍ଚ୍ଚଶେଷ କିମ୍ବା ଏପ୍ରିଲ ମାସର ପ୍ରଥମ ଭାଗ ସୁଦ୍ଧା ଏ ଦେଶ ଛାଡ଼ି ଚାଲିଯାଆନ୍ତି ।

ସାଇବେରିଆ ବଗ ଦେଖିବାକୁ ଧଳା ମାତ୍ର ଏହାର କପାଳ, ମୁହଁ ଓ ମୁଣ୍ଡର ଦୁଇକଡ଼ରେ ନାଲି ଟୁକୁଟୁକୁ ପରଥାଏ । ଡେଣାରେ ଅନେକ କଳା ପର ଥାଏ । ସମଗ୍ର ପୃଥିବୀରେ ମାତ୍ର କେତେ ଶହ ସାଇବେରିଆ ବଗ ବାସ କରୁଛନ୍ତି ଓ ଆନ୍ତର୍ଜାତିକ ସ୍ତରରେ ଏମାନଙ୍କ ସଂରକ୍ଷଣ ଲାଗି ଚେଷ୍ଟା କରାଯାଉଛି ।

1950ରୁ 1970 ମସିହା ଭିତରେ ଭରତପୁରକୁ ପ୍ରାୟ 100ଟି ସାଇବେରିଆ ବଗ ଶୀତକାଳୀନ ଭ୍ରମଣକାରୀ ଭାବରେ ଆସୁଥିଲେ । ବର୍ଷକୁ ବର୍ଷ ଏହି ସଂଖ୍ୟା କମିକମି 1989, 1990 ଓ1991 ମସିହାରେ ଯଥା· କ୍ରମେ 22, 14 ଓ 7ରେ ପହଞ୍ଚିଛି । ଏହି ଅଞ୍ଚଳ ବାରମ୍ବାର ଅନିୟମିତ ମୌସୁମୀ ପ୍ରବାହ ଓ ମରୁଡ଼ି ଦ୍ୱାରା କ୍ଷତିଗ୍ରସ୍ତ ହେଉଥିବାରୁ ସାଇବେରିଆ ବଗମାନଙ୍କ ସଂଖ୍ୟା ହ୍ରାସ ପାଉଛି ବୋଲି ଅନୁମାନ କରାଯାଏ । ପାର୍କମାନଙ୍କରେ ଘାସଚରିବା ନିଷିଦ୍ଧ ହୋଇଥିବାରୁ ପାଣିଘାସର ଅତ୍ୟଧିକ ବୃଦ୍ଧିଫଳରେ ପାଣିତଳେ ଥିବା ଉଦ୍ଭିଦର ମୂଳ (Rhizome) ନପାଇବା ଭରତପୁରକୁ ସାଇବେରିଆ ବଗମାନଙ୍କର ନଆସିବାର ଅନ୍ୟଏକ କାରଣ ବୋଲି କୁହାଯାଏ ।

## କଳାବେକିଆ ବଗ

*Grus nigricollis* (Przevalski)

ଏ ଜାତିର ବଗମାନେ ସେମାନଙ୍କ ସଙ୍ଗମଋତୁ ଏପ୍ରିଲ/ମେ ମାସଠାରୁ ଅକ୍ଟୋବର ଭିତରେ କେବଳ ଲଦାଖ ଅଞ୍ଚଳରେ ଦେଖାଯାଆନ୍ତି । ଅରୁଣାଚଳପ୍ରଦେଶ ଓ ଭୁଟାନରେ ସେମାନଙ୍କୁ ସେପ୍ଟେମ୍ବର ଠାରୁ ମାର୍ଚ୍ଚମାସ ମଧ୍ୟରେ ଦେଖିବାକୁ ମିଳେ । ଏମାନଙ୍କର ଉଚ୍ଚତା ପ୍ରାୟ 1ମିଟର, ଗୋଡ଼ର ରଙ୍ଗ କଳାମିଶା ବାଦାମି ଓ ବେକଟା ଗାଢ଼ କଳାରଙ୍ଗର ହୋଇଥାଏ । ସାଧାରଣତଃ ଦେହର ରଙ୍ଗ ପାଉଁଶିଆ ଫିକା ଧଳା ଓ ଲାଞ୍ଜଟା ଓହଳିଥିବା କଳା ପରରେ ଘୋଡ଼େଇ ହେଇଥାଏ ।

କଳାବେକିଆ ବଗ ଶସ୍ୟ, ମୂଳ, କନ୍ଦା, କୀଟ ଓ ଛୋଟ ମେରୁଦଣ୍ଡୀ ପ୍ରାଣୀମାନଙ୍କୁ ଖାଇ ବଞ୍ଚେ । ଲଦାଖରେ ସଙ୍ଗମ ଋତୁ କଟାଇ ଶୀତ ଋତୁ ବେଳକୁ ଛୁଆମାନଙ୍କୁ ସଙ୍ଗରେ ନେଇ ଏମାନେ ଉଷ୍ମ ଜଳବାୟୁ ଅନ୍ତର୍ଗତ ଭୂଭାଗ ଆଡ଼କୁ ସ୍ଥାନ ପରିବର୍ତ୍ତନ କରନ୍ତି । ଏମାନଙ୍କର ବିପନ୍ନ ସ୍ଥିତି ଯୋଗୁଁ କଳା ବେକିଆ ବଗକୁ ବନ୍ୟ ପ୍ରାଣୀ ସୁରକ୍ଷା ଆଇନର ଏକ ନମ୍ବର ତଫସିଲ ଅନ୍ତର୍ଭୁକ୍ତ କରାଯାଇ ସୁରକ୍ଷା ପ୍ରଦାନ କରାଯାଉଛି ।

ଭାରତରେ ଦେଖାଯାଉଥିବା 2100 ଜାତି ଓ ଉପଜାତିର ପକ୍ଷୀମାନଙ୍କ ମଧ୍ୟରେ ପୂର୍ବବର୍ଣ୍ଣିତ

ପକ୍ଷୀମାନଙ୍କ ଛଡ଼ା ଆହୁରି ଅନେକ କିସମର ପକ୍ଷୀ ସେମାନଙ୍କ ବାସସ୍ଥଳୀ ଉପରେ ଅନଧୀକାର ପ୍ରବେଶ, ଶିକାର, ବ୍ୟବସାୟ ଓ ଜଳବାୟୁ ପ୍ରଦୂଷଣ ଇତ୍ୟାଦି ଯୋଗୁଁ ବିପଦାପନ୍ନ ହୋଇପଡ଼ିଛନ୍ତି । ଏମାନଙ୍କ ମଧ୍ୟରେ ଧଳାପକ୍ଷୀଆ କାଠହଂସ, ବଡ଼ହଂସରାଳୀ, ଆଣ୍ଡାମାନ ହଂସରାଳୀ, ହିମାଳୟ ସୁନେଲି ଚିଲ, ନିକୋବାର ମେଗାପୋଡ଼ ପକ୍ଷୀ ଓ କୋଚିଲାଖାଇ ଆଦି ଉଲ୍ଲେଖଯୋଗ୍ୟ ।

## ସରୀସୃପ (Reptiles)

ସରୀସୃପ ହେଉଛନ୍ତି ପ୍ରଥମ ମେରୁଦଣ୍ଡୀ ପ୍ରାଣୀ ଯେଉଁମାନେ କି ଶୁଖିଲା ଭୂଇଁରେ ସର୍ବପ୍ରଥମେ ବାସ କରିବାରେ କୃତକାର୍ଯ୍ୟ ହୋଇଥିଲେ । 26 ରୁ 30କୋଟି ବର୍ଷ ପୂର୍ବେ ଅପର କାର୍ବୋନିଫେରସ (Upper carboniferous) ଯୁଗରେ ଉଭୟଚର ବେଙ୍ଗ ଜାତୀୟ ପ୍ରାଣୀଙ୍କଠାରୁ ଏମାନଙ୍କ ଉତ୍ପତ୍ତି ହୋଇଥିବାର ବିଶ୍ୱାସ କରାଯାଏ । ଶୁଖିଲା କାତିବିଶିଷ୍ଟ ଚର୍ମ ହେଉଛି ସେମାନଙ୍କର ଅନ୍ୟତମ ପ୍ରଧାନ ଲକ୍ଷଣ । ତେବେ ସବୁତକ ଶୁଖିଲା କାତିବିଶିଷ୍ଟ ପ୍ରାଣୀ ସରୀସୃପ ନୁହନ୍ତି । ସରୀସୃପ ବା ରେପ୍ଟାଇଲ୍ (Reptile) ଶବ୍ଦଟି ଲାଟିନ୍ ଶବ୍ଦ ରେପ୍ଟିଲିସ୍(Reptilis)ରୁ ଆସିଛି, ଯାହାର ଅର୍ଥ ଗୁରୁଣ୍ଡିବା । ଅଧିକାଂଶ ସରୀସୃପ ଯଦିଓ ସ୍ଥଳରେ ବାସ କରନ୍ତି, ତଥାପି କେତେକ ଜଳଚର ମଧ୍ୟ, ଯେପରି କଇଁଚ, ପାଣିରେ ରହେ ଓ ସ୍ଥଳଭାଗରେ ସନ୍ତାନ ଉତ୍ପାଦନ କରେ ।

ସାଧାରଣତଃ, ସରୀସୃପମାନେ ଶୀତଳରକ୍ତବିଶିଷ୍ଟ ପ୍ରାଣୀ । କାରଣ, ଏମାନଙ୍କର ଦେହର ଉତ୍ତାପ ବାହାରର ଉତ୍ତାପ ଅନୁଯାୟୀ ପରିବର୍ତ୍ତିତ ହୋଇଥାଏ । ପଶୁପକ୍ଷୀ ଭଳି ଉଷ୍ଣରକ୍ତ ବିଶିଷ୍ଟ ପ୍ରାଣୀମାନଙ୍କ ସଦୃଶ ସେମାନଙ୍କର କୌଣସି ସ୍ଥିର ଶାରୀରିକ ଉତ୍ତାପ ନାହିଁ । ସରୀସୃପମାନଙ୍କର ଆନ୍ତଃଶାରୀରିକ ବିପାକ ଅଳ୍ପପରିମାଣର ଘଟୁଥିବାରୁ ତଦନୁପାତରେ ତହିଁରୁ ଅଳ୍ପ ତାପ ସୃଷ୍ଟି ହୁଏ, ଫଳରେ ଏମାନେ ଶରୀରରେ ତାପ ନିୟନ୍ତ୍ରଣ ଲାଗି ସୂର୍ଯ୍ୟାଲୋକର ଆବଶ୍ୟକୀୟ ଉପଯୋଗ କରନ୍ତି । ଅଧିକାଂଶ ସରୀସୃପ ଗ୍ରୀଷ୍ମମଣ୍ଡଳୀୟ ଅଞ୍ଚଳରେ ବାସ କରନ୍ତି । ନାତିଶିତୋଷ୍ଣ ଜଳବାୟୁରେ ବାସ କରୁଥିବା ସରୀସୃପମାନେ ଶୀତକାଳରେ ନିଦ୍ରାଭିଭୂତ ହୁଅନ୍ତି । ବିବର୍ତ୍ତନ ପ୍ରକ୍ରିୟାରେ ଗର୍ଭସ୍ଥ ଭ୍ରୂଣର ଖାଦ୍ୟ ଆବଶ୍ୟକତା ପୂର୍ଣ୍ଣ କରୁଥିବା ତରଳ ଆମ୍ନିଓଟିକ୍ (Amniotic)ରସର ଜଳୀୟ ବାତାବରଣ ମଧ୍ୟରେ ସରୀସୃପ ତାର ଅଣ୍ଡାଗୁଡ଼ିକ ସ୍ଥଳଭାଗରେ ଦେଇପାରେ । ସେଥିପାଇଁ ସ୍ଥଳଭାଗରେ ଜୀବନଯାପନ କରିବା ସେମାନଙ୍କ ପାଇଁ ସମ୍ଭବପର ହୋଇ ପାରିଛି । ସହବାସଦ୍ୱାରା ସରୀସୃପ ସ୍ତ୍ରୀ ଦେହରେ ଥିବା ଅଣ୍ଡାଗୁଡ଼ିକର ଗର୍ଭାଧାନ ହୋଇଥାଏ । ସେମାନଙ୍କର ଏହି ଦୁଇଟି କଥା ଉଭୟଚର ବେଙ୍ଗଜାତୀୟ ପ୍ରାଣୀମାନଙ୍କ ତୁଳନାରେ ଅଧିକ ସୁବିଧା ପ୍ରଦ । ବେଙ୍ଗ ଜାତୀୟ ପ୍ରାଣୀ ଅଣ୍ଡାର ଗର୍ଭାଧାନ ନିମନ୍ତେ ଡ଼ାଳ ଉପରେ କେବଳ ନିର୍ଭର କରନ୍ତି ।

ସାତ କୋଟିରୁ କୋଡ଼ିଏ କୋଟି ବର୍ଷ ପୂର୍ବେ ମେସୋଜୋଇକ୍ ଯୁଗରେ ସରୀସୃପମାନଙ୍କର

ହିଁ ପୃଥିବୀରେ ପ୍ରାଧାନ୍ୟ ଥିଲା । ଏଇଟାହିଁ ସରୀସୃପମାନଙ୍କର "ସୁବର୍ଣ୍ଣ ଯୁଗ"। ସେତେବେଳେ ବ୍ରାକିଓସରସ୍, ବ୍ରୋଣ୍ଟୋସେରସ୍, ଡିପ୍ଲୋଡୋକସ୍, ଟାଇରାନୋସେରସ୍, ଆଲୋସେରସ୍ ଓ ଷ୍ଟେଗୋସେରସ୍ ଆଦି ଅନେକଜାତିର ଡାଇନୋସେରସ୍ ଥିଲେ । ଡାଇନୋସେରସ୍‌ମାନେ 12-14କୋଟି ବର୍ଷଧରି ପୃଥିବୀରେ ପ୍ରାଧାନ୍ୟ ବିସ୍ତାର କରି ରହିବା ପରେ ତାଙ୍କ ଯୁଗର ଅବସାନ ଘଟିଲା ଏବଂ ସ୍ତନ୍ୟପାୟୀପ୍ରାଣୀମାନଙ୍କର ଅଭ୍ୟୁଦୟ ହେଲା । ସେମାନଙ୍କର ବିଲୁପ୍ତି ସମ୍ପର୍କରେ ଅନେକ ସିଦ୍ଧାନ୍ତ ଅଛି । ଜଳବାୟୁର ଦ୍ରୁତ ପରିବର୍ତ୍ତନ, ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ଦ୍ୱାରା ସେମାନଙ୍କର ଅଣ୍ଡା ଭକ୍ଷଣ ଇତ୍ୟାଦି କାରଣ ସେଥିପାଇଁ ଦିଆଯାଉଛି । ତଥାପି ପ୍ରକୃତରେ କ'ଣ ଘଟିଥିଲା ତାହା କେହି ଜାଣନ୍ତି ନାହିଁ । ଏହା ଏକ ଦୁଃଖଦାୟକ ଘଟଣା ଯେ , ବର୍ତ୍ତମାନ ଗୋଟିଏ ହେଲେ ବି ଡାଇନୋସେରସ୍ ବଞ୍ଚି ନାହାନ୍ତି ।

ଅତୀତରେ ସରୀସୃପମାନଙ୍କୁ 16 ଟି ଦଳରେ ବିଭକ୍ତ କରାଯାଉଥିବା ଛଳେ, ଆଜି ତନ୍ମଧ୍ୟରୁ ପ୍ରାୟ 4ଟି ଦଳ ଅଛନ୍ତି । ଏମାନେ ହେଲେ କଇଁଚ, କୁମ୍ଭୀର, ଟୁଆଟାରା(Tuatara) ଓ ଝିଟିପିଟି ଏବଂ ସାପ । 420ରୁ ଊର୍ଦ୍ଧ୍ୱ ବିଭିନ୍ନପ୍ରକାରର ସରୀସୃପ ଜାତିର ପ୍ରାଣୀ ସମ୍ପଦରେ ଭାରତବର୍ଷ ସମୃଦ୍ଧଶାଳୀ । ବାଣିଜ୍ୟ ଉଦ୍ଦେଶ୍ୟରେ ସରୀସୃପମାନଙ୍କର ଚମଡ଼ାର ଭୟଙ୍କର ଉପଯୋଗ ଫଳରେ, ଏମାନଙ୍କ ମଧ୍ୟରୁ ଅନେକ ଦୁଷ୍ପ୍ରାପ୍ୟ ଓ ବିପନ୍ନ ହୋଇପଡ଼ିଛନ୍ତି । ଭାରତରେ ଥିବା କେତେକ ବିପଦାପନ୍ନ ସରୀସୃପଙ୍କ ବିଷୟରେ ଏଠାରେ ଆଲୋଚନା କରାଯାଉଛି ।

## କଇଁଚ (TURTLES)

"କଇଁଚ" ସରୀସୃପ ବଂଶ "ଚିଲୋନିଆ" (Chelonia)ର ଅନ୍ତର୍ଗତ । ଉଭୟ ସାମୁଦ୍ରିକ ଓ ମଧୁରଜଳରେ ଏହି କଇଁଚ ମାନେ ଦେଖାଯାଆନ୍ତି । ମଧୁରଜଳ କଇଁଚ ଉଭୟ ଜଳ ଓ ସ୍ଥଳବାସୀ ହୋଇଥାଆନ୍ତି । ଏମାନଙ୍କର ପିଠି ଉପରେ ହାଡୁଆ ଖୋଳପା ରହିଥାଏ । ଏହି ଖୋଳପାର ଦୁଇଟି ଭାଗ ଅଛି । ଉପରେ ଥିବା ବହିଃଆବରଣ ଓ ତନ୍ନିମ୍ନରେ ଚର୍ମାବୃତ ଅଂଶ ଖୋଳପାର ବାହାର ସ୍ତରଟି ଶିଂଘର ଏକ ସାଞ୍ଚ ପରି ଓ ଭିତରେ ସ୍ତରଟି ପତଳା ହାଡ଼ରେ ଗଠିତ । କଇଁଚ ଶରୀରଟି ଖୋଳପା ଭିତରେ ରହେ । ମାତ୍ର ଏହାର ବେକ, ଗୋଡ଼ ଓ ଲାଞ୍ଜ ଖୋଳପା ବାହାରେ ସ୍ୱାଧୀନଭାବରେ ପରିଚାଳିତ ହୋଇପାରେ । ତେଣୁ କଇଁଚ ଠିକ୍ ଏକ ବାକ୍ସବନ୍ଦ ପଶୁଟିଏ ଭଳି ।

କଇଁଚମାନଙ୍କର ଖାଦ୍ୟରେ ଅନେକ ଫରକ ଥାଏ । କେତେକ ତୃଣାହାରୀ ଓ ଅନ୍ୟମାନେ ସର୍ବଗ୍ରାସୀ ପ୍ରକୃତିର । ବାହାରୁ ଦେଖି ସହଜରେ କଇଁଚକୁ ମାଈ ବା ଅଣିରା ଚିହ୍ନିବା କଷ୍ଟକର । ଅଣିରା କଇଁଚମାନଙ୍କର ଲାଞ୍ଜ ମାଈମାନଙ୍କ ଠାରୁ ଲମ୍ବା ଓ ଖୋଳପା ତଳର ଚର୍ମାବୃତ ଅଂଶ ଅର୍ଦ୍ଧ ବର୍ତ୍ତୁଳାକାର । ମାଈ କଇଁଚ ଶୁଖିଲା ଜାଗା ଦେଖି ପ୍ରାୟ ଅଣ୍ଡା ଦିଏ ଏବଂ ତାକୁ ଉଷୁମ ରଖିବାକୁ ମାଟି ଘୋଡ଼େଇଦିଏ । ଅଧିକାଂଶ ସମୁଦ୍ର କଇଁଚଙ୍କ କ୍ଷେତ୍ରରେ ଏହି ଅଣ୍ଡା ଉଷୁମାଇବାର ସମୟ 40 ରୁ 70 ଦିନ ପର୍ଯ୍ୟନ୍ତ ହୋଇଥାଏ । କଇଁଚମାନେ ଦୀର୍ଘଜୀବି । ଭାରତମହାସାଗରସ୍ଥିତ ସିକେଲେସ୍

ଦ୍ୱୀପରେ ଏକ ପ୍ରକାଣ୍ଡକାୟ କଇଁଚ 152 ବର୍ଷ ଧରି ବଞ୍ଚିରହିଥିବାର ଜଣାଯାଏ । କଇଁଚ ଅଣ୍ଡାସଂଗ୍ରହର ନିଶା, କଇଁଚ ମାଂସ ଖାଇବାର ଲାଳସା ଓ ତାର ଖୋଳପାରେ ଘର ସଜାଇବାର ଲୋଭ, ସମୁଦ୍ର ଓ ସମୁଦ୍ର କୂଳର ପ୍ରଦୂଷଣ ଯୋଗୁଁ କଇଁଚମାନେ କ୍ରମେ ଦୁଷ୍ପ୍ରାପ୍ୟ ଓ ବିପଦଗ୍ରସ୍ତ ହୋଇପଡ଼ିଛନ୍ତି ।

## ଚମପିଠିଆ କଇଁଚ

*Dermochelys Coriacea* (Linnaeus)

ଭାରତ ମହାସାଗରରେ 400 ରୁ 700କେ:ଜି: ଓଜନର ପୃଥିବୀର ସର୍ବବୃହତ୍ ଚମପିଠିଆ କଇଁଚ ଦେଖାଯାଆନ୍ତି । ଶକ୍ତ ମୋଟା ଚମଡ଼ା ଯୋଗୁଁ ଏମାନଙ୍କୁ ପୃଥିବୀରେ ଥିବା ସମସ୍ତ ପ୍ରକାର କଇଁଚମାନଙ୍କ ପୁରାତନ ବଂଶଧର ବୋଲି ମନେକରାଯାଏ । ଏମାନଙ୍କର ଚମଡ଼ାରେ ଥିବା ଖଣ୍ଡଖଣ୍ଡ ହାଡ଼ ହୁଏତ ଆଦିମ ଯୁଗର କଇଁଚ ସହିତ ଏହାର ନିକଟ ସମ୍ପର୍କ ଥିବାର ସୂଚନା ଦିଏ । ଦେହର ଉପରିଭାଗ ବା ପିଠିଟା ମୋଟା ରବର ପରି ମସୃଣ ହୋଇ ସାମ୍ନାରୁ ପଛପର୍ଯ୍ୟନ୍ତ ଲମ୍ୱାଲମ୍ୱା ହିଡ଼ପରି ଗାର ପଡ଼ିଥାଏ । ତ୍ରିଭୁଜାକୃତି ଦେହ, ବିଶାଳମୁଣ୍ଡ ଓ ମୋଟା ବେକ ହେଉଛି



ଏ କଇଁଚର ଲକ୍ଷଣ । ଗୋଡ଼ ଗୁଡ଼ିକ ଆହୁଲାପରି । ସାମ୍ନାଗୋଡ଼ ଦୁଇଟି ପକ୍ଷୀର ଡେଣା ପରି ଲମ୍ବ ଓ ତ୍ରିଭୁଜାକୃତି ଏବଂ ପଛ ଦୁଇଗୋଡ଼ ଚଉଡ଼ା ହୋଇ ଲାଞ୍ଜ ସହିତ ସଂଯୁକ୍ତ ହୋଇଥାଏ । ଏମାନଙ୍କ ପିଠି ଉପରଟା ସିଲଟ କଳାରଙ୍ଗର ହୋଇ ତହିଁରେ କେତେକେ ଧଳାଦାଗ ଥାଏ । ତଳପାଖଟା ଈଷତ୍ ଲାଲ୍ ସହିତ ଧଳାକଳା ରଙ୍ଗ ମିଶି ତହିଁରେ ଈଷତ୍ ଲାଲ୍ ବା ନୀଳ ଦାଗମାନ ଥାଏ । ଏହାର ଲାଞ୍ଜଟା କଳାରଙ୍ଗର ।

ଚମପିଠିଆ କଇଁଚ ସାମୁଦ୍ରିକ ଅମେରୁଦଣ୍ଡୀପ୍ରାଣୀ, ମାଛ ଓ ଜଳଜଉଦ୍ଭିଦ ଖାଇ ବଞ୍ଚେ । ଯଦିଓ ମୂଳତଃ ଏମାନେ ଗ୍ରୀଷ୍ମମଣ୍ଡଳୀୟ, ତଥାପି କେବଳ ମେରୁଅଞ୍ଚଳ ଛାଡ଼ି ପୃଥିବୀର ସବୁଅଞ୍ଚଳରେ ଏମାନେ ଦେଖାଯାଆନ୍ତି । ଜଳରେ ବେଶ୍ କାର୍ଯ୍ୟକ୍ଷମ ହୋଇପାରୁଥିବା ବେଳେ ଏମାନେ ସ୍ଥଳଭାଗରେ ନିଷ୍କ୍ରିୟ ହୋଇପଡ଼ନ୍ତି ।

ଅନ୍ୟାନ୍ୟ ସବୁ ଜଳାଶୟୀ କଇଁଚ ମାନଙ୍କ ଭଳି ମାଈ ଚମପିଠିଆ କଇଁଚ ଯେତେବେଳେ

ସ୍ଥଳଭାଗରେ ଅଣ୍ଡାଦେଇ ତାକୁ ଘୋଡ଼େଇବା ପାଇଁ ପାଣିରୁ ଉଠିଆସେ, ସେତେବେଳେ ସେ ଅତି ଦୁର୍ବଳତା ଅନୁଭବ କରେ । ପିଠିଉପରେ ବାଲି ଗଦାକରି ଗୁରୁଣ୍ଡିଗୁରୁଣ୍ଡି ସେ ଛଦ୍ମବେଶରେ ପାଣିରୁ ବାହାରି କୂଳକୁ ଉଠିଆସେ । ବାଲିରେ ଗୋଟିଏ ବଡ଼ଗାତ କରି ତହିଁରେ ସେ ଅଣ୍ଡାତକ ଜମାଇଦିଏ । ଅଣ୍ଡାକୁ ପୋତିସାରି ମାଈକଇଁଚଟି ତା'ର ଚାରିଆଡ଼ୁ ଏପରି କୁଣ୍ଡିଦିଏ, ଯେପରିକି ସେଗୁଡ଼ିକୁ ସହଜରେ ଦେଖିହେବ ନାହିଁ । ତାପରେ ସେ ସ୍ଥାନକୁ କସ୍ତୁରୀର ତୀବ୍ର ସୁବାସରେ ଭରିଦେଇ ଅଣ୍ଡାରେ ଥିବା ଛୁଆମାନଙ୍କୁ ପୂରାପୂରି ସେମାନଙ୍କ ନିଜଉପରେ ଛାଡ଼ିଦେଇ ସେ ପୁଣି ସମୁଦ୍ରକୁ ଫେରିଯାଏ ।

ମେ ଓ ଜୁନ୍ ମାସ ହେଉଚି ସେମାନଙ୍କ ଅଣ୍ଡା ଦେବାର ଉତ୍କୃଷ୍ଟ ସମୟ, ଯେତେବେଳେ ମାଈ କଇଁଚ 20 ରୁ 200 ପର୍ଯ୍ୟନ୍ତ ଅଣ୍ଡା ଦିଏ । ଅଣ୍ଡାଦେବାର ନିଭୃତ ସ୍ଥାନଗୁଡ଼ିକ ମଧ୍ୟରେ ମାନ୍ନାର ଉପସାଗରୀୟ ଦ୍ୱୀପପୁଞ୍ଜ ଓ ଆଣ୍ଡାମାନ ଆଚିପେଲାଗୋ ଉଲ୍ଲେଖଯୋଗ୍ୟ । ସାମୁଦ୍ରିକ ପ୍ରଦୂଷଣ ଓ ମଣିଷମାନଙ୍କ ଦ୍ୱାରା କଇଁଚ ଅଣ୍ଡା ସଂଗ୍ରହ ଫଳରେ ଏ ଜାତିର କଇଁଚ ଦୁଷ୍ପ୍ରାପ୍ୟ ହୋଇପଡ଼ିଛି ।

## ସାମୁଦ୍ରିକ ସବୁଜକଇଁଚ

*Chelonia mydas* (Linnaeus)

ପୃଥିବୀର ସମସ୍ତ ଗ୍ରୀଷ୍ମମଣ୍ଡଳୀୟ ଓ ଉପଗ୍ରୀଷ୍ମମଣ୍ଡଳୀୟ ମହାସାଗରମାନଙ୍କରେ ସାମୁଦ୍ରିକ ସବୁଜ କଇଁଚମାନେ ବିକ୍ଷିପ୍ତ ଭାବେ ପରିବ୍ୟାପ୍ତ ହୋଇଛନ୍ତି । ଏହାର ଦେହ ଚେପ୍ଟା ହୃତ୍‌ପିଣ୍ଡ ଆକୃତିର ହୋଇ ବେଶ୍ ଚିକ୍‌କଣ । ବର୍ତ୍ତୁଳିତ ପିଠିର ଉପରିଭାଗ ପୂରାପୂରି ହାଡ଼ୁଆ ନୁହେଁ । ମୁଣ୍ଡଟା ଛୋଟ ହୋଇ ଗୋଲାକାର ଓ ତହିଁରେ ଥିବା ଥୋମଣିଟା ମଧ୍ୟ ସାନ । ଆହୁଲା ଆକୃତିର ଆଗଗୋଡ଼ ଦୁଇଟି ବେଶ୍ ଲମ୍ବା । ବୟସ୍କ ସବୁଜକଇଁଚ ଦେହର ରଙ୍ଗ ସବୁଜରୁ ବାଦାମୀ ଓ ଉପରିଭାଗରେ ବାଦାମୀ ବା କଳାରଙ୍ଗର ଦାଗମାନ ଥାଏ । ଦେହର ତଳିପେଟ ଦେଖିବାକୁ ଫିକା ହଳଦିଆ । ଏପ୍ରକାର କଇଁଚମାନଙ୍କ ଓଜନ 150 ରୁ 175 କିଲୋ ପର୍ଯ୍ୟନ୍ତ ହୋଇଥାଏ ।

ଭାରତର ଆଣ୍ଡାମାନ ଦ୍ୱୀପପୁଞ୍ଜ ଓ ଗୁଜୁରାଟର ସୌରାଷ୍ଟ୍ର ଉପକୂଳରେ ସବୁଜ କଇଁଚମାନେ ସମୁଦ୍ରତୀର ବାଲି ଓ ପାହାଡ଼ିଆ ଖୋଲା ବା ପଥର ଉପରେ ଶୋଇ ଖରା ଖାଉଥିବାର ଦେଖାଯାଏ । ସମୁଦ୍ରତୀର ବାଲିରେ ଖୋଳିଥିବା ଖାଇମାନଙ୍କରେ ମାଈ କଇଁଚ 350 ରୁ 600 ପର୍ଯ୍ୟନ୍ତ ଅଣ୍ଡା ଦେଇ ବାଲି ଘୋଡ଼ାଇଦିଏ । ଅଣ୍ଡାଗୁଡ଼ିକ ଫୁଟିବାକୁ 40 ରୁ 50 ଦିନ ଲାଗେ । ଏମାନଙ୍କର ଅଣ୍ଡା ଓ ମାଂସ ଖାଦ୍ୟଭାବରେ ବ୍ୟବହୃତ ହେଉଥିବା ଯୋଗୁଁ ସାମୁଦ୍ରିକ କଇଁଚମାନେ ବିଲୁପ୍ତ ହୋଇଯିବାର ବିପଦ ବୃଦ୍ଧି ହୋଇଛି । ସେମାନଙ୍କର ସୁରକ୍ଷା ଓ ସଂଖ୍ୟାବୃଦ୍ଧି କରିବାର ପ୍ରଚେଷ୍ଟା ଏପର୍ଯ୍ୟନ୍ତ ବିଶେଷ ଫଳବତୀ ହୋଇନାହିଁ, କାରଣ ସେମାନଙ୍କର ବସାବାନ୍ଧିବାର ଜାଗା, ପ୍ରଜନନାତ୍ମକ ଆଚରଣ ଓ ଯାଯାବର ପ୍ରବୃତ୍ତି ବିଷୟରେ ଆମମାନଙ୍କର ଏଯାଏଁ ସ୍ପଷ୍ଟ ଧାରଣା ହୋଇନାହିଁ ।

## କଇଁଚପିଠିଆ କଇଁଚ

*Eretmochelys imbricata* (Linnaeus)

ସାମୁଦ୍ରିକ କଇଁଚମାନଙ୍କ ଭିତରେ ଏହା ସବୁଠାରୁ ସାନ । ଏହାର ଓଜନ 60ରୁ 140 କେଜି ପର୍ଯ୍ୟନ୍ତ ହୋଇଥାଏ । ଅଣଓସାରିଆ ପିଠିଉପରେ କରତଦାନ୍ତ ପରି କଠିଣ କାତିସବୁ ଟାଇଲିଛପର ହେଲାଭଳି ଉପରକୁ ଉପର ଚଢ଼ାଚଢ଼ି ହୋଇ ରହିଥାଏ । ସରୁବେକ ଓ ଛଞ୍ଚାଣ ଚଞ୍ଚୁପରି ମୁନିଆ ଥୋମଣି ଏହି କଇଁଚର ବିଶେଷତ୍ୱ । ବାଦାମୀ କଳାମିଶା ଆମ୍ବେର୍ ରଙ୍ଗର ଦେହ ଓ ପିଠି ଉପରେ ବିକିରିତ ହେବା ପରି ବାଦାମୀ ଓ କଳା ଡୋରିଆ ରେଖାମାନ ଥାଏ । ପେଟତଳଟା ହଳଦିଆରୁ କମଳା ବା ନାଲିମିଶା ବାଦାମୀ ରଙ୍ଗର ।

ପୃଥିବୀର କେତେକ ସ୍ଥାନରେ ଥିବା ଉଷ୍ଣସମୁଦ୍ରରେ ଏମାନେ ବାସ କରନ୍ତି । ଏଇ କଇଁଚ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜ ଚତୁଃପାର୍ଶ୍ୱସ୍ଥ ଭାରତ ମହାସାଗରରେ ଦେଖାଯାଆନ୍ତି । ଏମାନେ ସବୁପ୍ରକାର ସାମୁଦ୍ରିକ ଅମେରୁଦଣ୍ଡୀ ପ୍ରାଣୀ ଓ ମାଛ ଖାଆନ୍ତି । ତାଙ୍କ ସୁନ୍ଦର ଖୋଳପାରୁ ବିଭିନ୍ନପ୍ରକାରର ସାଜସରଞ୍ଜାମ ତିଆରି ହୋଇଥାଏ । ବ୍ୟାବସାୟିକ ଦିଗରୁ ତେଣୁ ଏହାର ବ୍ୟବହାର ପ୍ରଚୁର ଏବଂ ତାକୁ ବିପଦଗ୍ରସ୍ତ କରିପକାଉଛି ।

## କୁମ୍ଭୀର (CROCODILES)

କୁମ୍ଭୀର, ଖଣ୍ଟିଆ, ଘଡ଼ିଆଳ ଆଦି କୁମ୍ଭୀର ପରିବାର ସରୀସୃପ ଶ୍ରେଣୀର ଅନ୍ତର୍ଭୁକ୍ତ । ସରୀସୃପମାନଙ୍କର ସୁବର୍ଣ୍ଣଯୁଗ ଠାରୁ ଏପର୍ଯ୍ୟନ୍ତ ଦୀର୍ଘ ୧୬କୋଟି ବର୍ଷରୁ ଅଧିକ କାଳ ଧରି ଏ ଜାତୀୟ ପ୍ରାଣୀମାନେ ସେମାନଙ୍କ ଶରୀର ବା ପ୍ରକୃତିରେ କୌଣସି ପରିବର୍ତ୍ତନ ବିନା ପୃଥିବୀରେ ତିଷ୍ଠି ରହିଛନ୍ତି । ଏମାନେ ଆମମାନଙ୍କୁ ଦୀର୍ଘ ଅତୀତର ଭୟଙ୍କର ପଶୁମାନଙ୍କ କଥା ସୂଚାଇ ଦିଅନ୍ତି, ଯେଉଁମାନେ କି ବହୁପୂର୍ବରୁ ବିଲୁପ୍ତ ହୋଇଯାଇଛନ୍ତି ।

କୁମ୍ଭୀରଜାତୀୟ ସବୁ ଜୀବଙ୍କର ଜଳଚରଙ୍କ ଜୀବନ ସହିତ ଖାପ ଖାଇଲା ଭଳି ଗଠନାତ୍ମକ ବିଶେଷତ୍ୱ ଥାଏ । ଥୋମଣି ଅଗରେ ତାଙ୍କ ନାକପୁଡ଼ାର ଅବସ୍ଥିତି ଯୋଗୁଁ ଦେହର ବଳକା ଅଂଶ ପାଣିରେ ବୁଡ଼ିରହିଥିଲେ ମଧ୍ୟ ନିଶ୍ୱାସ ନେବା ଲାଗି ଏହା ସକ୍ଷମ ହୁଏ । ନାକ ପୁଡ଼ା ଓ କାନ ବନ୍ଦ କରିବା ଲାଗି ତାଙ୍କର ଆଚ୍ଛାଦକ ଚର୍ମ ରହିଛି, ଫଳରେ ଏହି ଜନ୍ତୁ ପାଣିରେ ବୁଡ଼ିଲାବେଳେ ନାକ ଓ କାନକୁ ବନ୍ଦ ରଖି ପାରେ । ଠିକ୍ ସେହିପରି ତୃତୀୟ ଆଖିପତା ଥିବାରୁ ଏମାନେ ପାଣି ଭିତରେ ଦେଖିବା ପାଇଁ କେତେକାଂଶରେ ସମର୍ଥ ହୁଅନ୍ତି । ଶରୀରର ଆକାର, ଛୋଟ ଗୋଡ଼ ଓ ଲମ୍ବ ଲାଞ୍ଜକୁ ମଙ୍ଗପରି ବ୍ୟବହାର କରି ଏମାନେ ଅତି ଦକ୍ଷତାବରେ ପାଣିରେ ପହଁରି ପାରନ୍ତି । ସାଧାରଣତଃ ଏମାନଙ୍କ ଦେହର ରଙ୍ଗ କଳା ଓ ଦେହସାରା ହାଡୁଆ ପାତ ଭଳି ଥାଏ । ମାଟି ଉପରେ ଏମାନେ ପେଟଭରା ଦେଇ ଚାଲନ୍ତି ବା ଘୁଷୁରନ୍ତି ।

କୁମ୍ଭୀର ଜାତୀୟ ପ୍ରାଣୀମାନଙ୍କର ଦୃଷ୍ଟି ଶକ୍ତି, ଘ୍ରାଣଶକ୍ତି ଓ ଶ୍ରବଣଶକ୍ତି ଅତି ପ୍ରଖର । ସେମାନଙ୍କ ଦେହରେ ଦୁଇହଳ ଗନ୍ଧଗ୍ରନ୍ଥି ଅଛି । ତଣ୍ଟିପାଖରେ ହଳେ ଓ ମଳଦ୍ୱାର ଭିତରେ ହଳେ । ସଙ୍ଗମଋତୁରେ ଏମାନେ ମାଟି କିମ୍ୱା ପାଣି ଭିତରେ କସ୍ତୁରୀ ଭଳି ସ୍ରାବ ପରିତ୍ୟାଗ କରନ୍ତି । କୁମ୍ଭୀରମାନେ ସେମାନଙ୍କର ଟାଣ ଖୋଳପାଯୁକ୍ତ ଅଣ୍ଡାଗୁଡ଼ିକୁ ଉଷୁମ କରିବା ପାଇଁ ମାଟିରେ ପୋତିଦିଅନ୍ତି । ମାଈକୁମ୍ଭୀର ଅଣ୍ଡାକୁ ଜଗିରହେ ଓ ବେଳେବେଳେ ଅଣ୍ଡାକୁ ଭାଙ୍ଗି ଛୁଆମାନଙ୍କୁ ତହିଁରୁ ବାହାର କରିବାରେ ସାହାଯ୍ୟ କରେ । ଛୁଆମାନଙ୍କୁ ପାଟିରେ କାମୁଡ଼ିଧରି ପାଣିରେ ନେଇ ଛାଡ଼ିଦିଏ ଓ ଭକ୍ଷଣକାରୀ ମାନଙ୍କ କବଳରୁ ରକ୍ଷାକରେ ।

କୁମ୍ଭୀର ଜାତୀୟ ପ୍ରାଣୀ ପ୍ରାୟତଃ ମାଂସାଶୀ ପ୍ରକୃତିର । ଜୀବନସାରା ସେମାନଙ୍କର ଦାନ୍ତ ଝଡ଼ି ପୁଣି ଦାନ୍ତ ଉଠେ । ଶରୀର ବିଜ୍ଞାନଭିତ୍ତିକ ଏକ ଅଦ୍ଭୁତ କଥା ହେଉଛି ଯେ, ସରୀସୃପମାନଙ୍କର ତିନିକୋଠରୀ ବିଶିଷ୍ଟ ହୃତ୍‌ପିଣ୍ଡ ଥିବାସ୍ଥଳେ କୁମ୍ଭୀରର ହୃତ୍‌ପିଣ୍ଡ ଚାରିକୋଠରୀ ବିଶିଷ୍ଟ ।

ଇଜିପ୍ଟର ଲୋକେ ପ୍ରାଚୀନଯୁଗରେ ନୀଳନଦୀରେ ବାସ କରୁଥିବା କୁମ୍ଭୀରମାନଙ୍କୁ ପୂଜା କରୁଥିଲେ । ସେମାନେ ଏହି ପ୍ରାଣୀଙ୍କୁ ପୋଷା ମନେଇ ମନ୍ଦିରରେଥିବା ପୋଖରୀମାନଙ୍କରେ ରଖୁଥିଲେ । ବିଶେଷ କରି ମିଶର ସଭ୍ୟତାର ପ୍ରଧାନ କେନ୍ଦ୍ରସ୍ଥଳୀ ଥିବିସ୍‌ରେ ଏହା ପ୍ରଚଳିତ ଥିଲା । ଯେତେବେଳେ ଏହି ପବିତ୍ର କୁମ୍ଭୀରମାନଙ୍କର ମୃତ୍ୟୁ ହେଉଥିଲା, ସେମାନଙ୍କ ମୃତ ଦେହକୁ ପବିତ୍ର ''ମମି'' ଭାବରେ ପିରାମିଡ୍ ଭିତରେ ସାଇତି ରଖାଯାଉଥିଲା । ଏବେ ମଧ୍ୟ ଭାରତର କେତେକ ଅଞ୍ଚଳରେ କୁମ୍ଭୀରକୁ ସମ୍ମାନର ପାତ୍ର ଭାବରେ ବିଚାର କରାଯାଏ ।

## ଘଡ଼ିଆଳ କୁମ୍ଭୀର

*Gavialis gangeticus* (Gmelin)

ଅନ୍ୟସବୁ କୁମ୍ଭୀରଙ୍କ ଠାରୁ ଘଡ଼ିଆଳ ତା'ର ଲମ୍ବା ଓ ସରୁ ଥୋମଣି ଯୋଗୁଁ ପୃଥକ୍ ବିବେଚିତ ହୁଏ । ମାଛ ଧରିବା ପାଇଁ ଏହି ଥୋମଣିର ବିଶେଷତ୍ୱ ରହିଛି । ଏହାର ଉପର ଓ ତଳମାଢ଼ିର ପ୍ରତ୍ୟେକ ପାଖରେ ଦୁଇଡ଼ଜନରୁ ଅଧିକସଂଖ୍ୟକ ଧାରୁଆ ବା ତୀକ୍ଷ୍ଣ ଦାନ୍ତ ଅଛି । ଏହାର ଦେହସାରା କଠିନ କାତି ଭରିରହିଥାଏ, ଯାହା ହଳଦୀମିଶା ବାଦାମୀରଙ୍ଗର । ଏସବୁ କାତିରେ ଗାଢ଼ ବାଦାମୀରଙ୍ଗର ଛାପିଛାପିକା ଦାଗ ଥାଏ । ବୟସ୍କ ଅଣ୍ଡିରା କୁମ୍ଭୀରର ଥୋମଣି ଅଗରେ ଗୋଟିଏ କୁଜ ଥାଏ । ଯାହାକି ମାଟି ମାଠିଆ ବା ଘଡ଼ି ପରି ଦେଖାଯାଏ । ତେଣୁ ଏହି କୁମ୍ଭୀରକୁ ଘଡ଼ିଆଳ ବୋଲି ନାମିତ କରାଯାଇଛି ।

ଗଙ୍ଗା, ବ୍ରହ୍ମପୁତ୍ର, ସିନ୍ଧୁ ଓ ମହାନଦୀରେ ଘଡ଼ିଆଳ କୁମ୍ଭୀର ଦେଖାଯାଆନ୍ତି । ମାଛ ସେମାନଙ୍କର ପ୍ରଧାନ ଖାଦ୍ୟ । ମାତ୍ର ଛେଳି, ମେଣ୍ଢା, ଚଢ଼େଇ ଓ ଅନ୍ୟ ମେରୁଦଣ୍ଡୀ ପ୍ରାଣୀମାନେ ମଧ୍ୟ ଏହାର ଆହାର ହୁଅନ୍ତି । ଶୀତକାଳରେ ବହୁ ସମୟଧରି ଏମାନେ ନଦୀକୂଳରେ ଖରା ପୋଇଁବାକୁ ପଡ଼ିରହନ୍ତି ।



ବିଗତ ଦୁଇଦଶନ୍ଧି ଧରି, ଚମଡ଼ା ଲୋଭରେ ଘଡ଼ିଆଳ ଶିକାର ଚାଲିଥିବା ହେତୁ ସେମାନଙ୍କ ସଂଖ୍ୟା ପ୍ରବଳ ଭାବରେ କମିଗଲାଣି । ଏବେ ଘଡ଼ିଆଳ ପ୍ରଜନନ ପରିକଳ୍ପନା ତଥା ସଂରକ୍ଷଣ କାର୍ଯ୍ୟକ୍ରମ ପ୍ରଚଳନ ହେବା ଫଳରେ ଏହି ଅବସ୍ଥାର ଯଥେଷ୍ଟ ଉନ୍ନତି ହୋଇ ପାରିଛି ।

### ବଉଳାକୁମ୍ଭୀର

*Crocodylus porosus* (Schneider)

କୁମ୍ଭୀର ମଧ୍ୟରେ ବଉଳା କୁମ୍ଭୀର ସର୍ବାପେକ୍ଷା ବଡ଼ ଆକୃତିର । ଏମାନେ ସମୁଦ୍ର ତୀରରେ ଥିବା ଲୁଣାଜଳର ଅଧୁଷିତ ସନ୍ତସନ୍ତିଆ ଅଞ୍ଚଳ ଓ ନଦୀମୁହାଣ ଆଦିରେ ବାସ କରନ୍ତି । ଅର୍ଦ୍ଧଜଳଚର ଜୀବନପ୍ରଣାଳୀରେ ଏମାନେ ପାରଙ୍ଗମ । ଗୋଟିଏ ବଉଳା କୁମ୍ଭୀର ସାଧାରଣତଃ 7 ରୁ 8 ମିଟର ଲମ୍ବ ହୋଇଥାଏ । ତେବେ ସର୍ବାଧିକ 10 ମିଟର ଲମ୍ବବିଶିଷ୍ଟ କୁମ୍ଭୀର ମଧ୍ୟ ଥିବାର ଦେଖାଯାଇଛି । ଠିଆଠିଆ କାଠିଭଳି ଶିଙ୍ଗଖୋଳ ଭିତରେ ଛୋଟଛୋଟ ପାଟିଆ ହାଡ଼ମାନ, ସାଙ୍ଗୁପରି ଦେହଟା ସାରା ଯୋଡ଼େଇ ହୋଇ ରହିଥାଏ । ଏଥିଯୋଗୁଁ ଜନ୍ତୁର ଦେହଟା ସବୁଜ ବା ଅଳିଭରଙ୍ଗର ଦେଖାଯାଏ । ଲାଞ୍ଜ ଉପରେ ଧାଡ଼ିହୋଇ ରହିଥିବା ଏହି ହାଡ଼ୁଆ କାଠିଗୁଡ଼ିକ କରତ ପରି ଦିଶେ ।



ମାଡ଼ିସାରା କାଟା ପରି ଦନ୍ତ ଦାନ୍ତଗୁଡ଼ାକ ପାଟି ବନ୍ଦ କରିଥିଲେ ମଧ୍ୟ ବାହାରକୁ ଦେଖାଯାଏ । ଏମାନେ ସରୀସୃପ, ମାଛ, ପାଣିରେ ରହୁଥିବା ପକ୍ଷୀ ଓ ଛୋଟ ମେରୁଦଣ୍ଡୀ ପ୍ରାଣୀମାନଙ୍କୁ ଖାଇ ବଞ୍ଚନ୍ତି । ଭାରତର ପୂର୍ବଉପକୂଳ ଓ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜରେ ବଢ଼ବାକୁମ୍ଭୀର ଦେଖାଯାଆନ୍ତି ।

## ଘୋ-ମୁହାଁ କୁମ୍ଭୀର

*Crocodylus palustris* (Lesson)

ଘୋ-ମୁହାଁ କୁମ୍ଭୀର ବା ମଗର ଦେଖିବାକୁ ଘଡ଼ିଆଳ ଓ ବଢ଼ବାକୁମ୍ଭୀରଠାରୁ ଅନେକ ଛୋଟ । ଏମାନଙ୍କର ହାରାହାରି ଲମ୍ବ 3 ରୁ 5 ମିଟର, ଥୋମଣି ଛୋଟ ଓ ଚଉଡ଼ା । ବୟସ୍କ ଘୋମୁହାଁ ଦେଖିବାକୁ ଗାଢ଼ ବାଇଗଣି ରଙ୍ଗର । ଠିକ୍ ବଢ଼ବା କୁମ୍ଭୀର ପରି ଏହାର ଦେହସାରା ଟାଣଟାଣ କାତି ଥାଏ ।



ଏହାର ଗତିବିଧି ଟିକେ ମାଦା ଧରଣର । ନଦୀ, ହ୍ରଦ ଓ ଝରଣା ଇତ୍ୟାଦିରେ ଘୋମୁହାଁ କୁମ୍ଭୀର ଦେଖାଯାଆନ୍ତି । ମାଛ, ବେଙ୍ଗ, ଚଢ଼େଇ ଓ ଛୋଟ ସ୍ତନ୍ୟପାୟୀ ପ୍ରାଣୀମାନେ ଏହାର ଖାଦ୍ୟ । ଜାମ୍ମୁକାଶ୍ମୀର, ପଞ୍ଜାବ, ହିମାଚଳ ପ୍ରଦେଶ ଓ ମରୁଅଞ୍ଚଳ ଛଡ଼ା ଦେଶର ଅନ୍ୟସବୁ ଅଞ୍ଚଳରେ ଘୋମୁହାଁ କୁମ୍ଭୀର ଦେଖାଯାଆନ୍ତି । ବନ୍ୟା ଓ ମରୁଡ଼ି ଯୋଗୁଁ ଏମାନଙ୍କର ବାସସ୍ଥଳୀ ବିନଷ୍ଟ ହେବାରୁ ଓ ଚମଡ଼ାପାଇଁ ଶିକାର ତଥା ଅଣ୍ଡା ଖାଇବା ଇତ୍ୟାଦି କାରଣରୁ ଘୋମୁହାଁ କୁମ୍ଭୀରମାନଙ୍କ ସଂଖ୍ୟା ବହୁତ କମିଯାଇଛି । କୁମ୍ଭୀର ପ୍ରଜନନ ପରିକଳ୍ପନା ଓ ସଂରକ୍ଷଣ ପ୍ରଚେଷ୍ଟା ଫଳରେ ଏହି ଅବସ୍ଥାର କେତେକ ପରିମାଣରେ ବର୍ତ୍ତମାନ ଉନ୍ନତି ଘଟିଛି ।

## ଝିଟିପିଟି (LIZARDS)

ଝିଟିପିଟି ଓ ସେମାନଙ୍କର ନିକଟତମ ସମ୍ପର୍କୀୟ ସାପ ହେଲେ ଆଧୁନିକ ଯୁଗର ବହୁଳ ଭାବରେ ବିସ୍ତୃତ ସରୀସୃପ । ଏହିଜାତୀୟ ସରୀସୃପ ବିକ୍ଷିପ୍ତଭାବରେ ପୃଥିବୀର ଅଧିକାଂଶ ଅଞ୍ଚଳରେ ବିସ୍ତାର ଲାଭ କରିଛନ୍ତି । ସାପ ଓ ଝିଟିପିଟିମାନଙ୍କର ସମ୍ପର୍କ ଏତେ ନିକଟତମ ଯେ, ସେମାନଙ୍କୁ ଗୋଟିଏ

ଶ୍ରେଣୀ "ସ୍କ୍ୱାମାଟା (Squamata)"ରେ ରଖା ଯାଇଛି । ଲାଟିନ୍ ଶବ୍ଦ "ସ୍କ୍ୱାମାଟା"ର ଅର୍ଥ କାତିଯୁକ୍ତ ପ୍ରାଣୀ । ପ୍ରକୃତପକ୍ଷେ ସବୁ ସରୀସୃପ ହେଉଛନ୍ତି କାତିଯୁକ୍ତ ପ୍ରାଣୀ । ଚମଡ଼ାରୁ ଉତ୍ପତ୍ତି ହୋଇଥିବା କାତି ଓ ଶିଙ୍ଗପାତିଆ ଦ୍ୱାରା ସେମାନଙ୍କ ଦେହସାରା ପ୍ରାୟତଃ ଘୋଡ଼େଇ ହୋଇଥାଏ ।

ଅନ୍ୟସବୁ ସରୀସୃପଙ୍କ ଭଳି ଝିଟିପିଟି ମଧ୍ୟ ଶରୀରକୁ ଉଷୁମ କରିବା ଲାଗି ବାହ୍ୟତାପ ଉପରେ ନିର୍ଭର କରନ୍ତି । ଏଥିଲାଗି ସେମାନଙ୍କୁ ବାହ୍ୟତାପଜ ପ୍ରାଣୀ କୁହାଯାଏ ।

ଶତ୍ରୁ କବଳରୁ ରକ୍ଷାପାଇବା ଲାଗି ଝିଟିପିଟି ଜାତୀୟ ସରୀସୃପମାନଙ୍କ ବହୁ ଶାରୀରିକ ବିଶେଷତ୍ୱ ବିକାଶ ଲାଭ କରିଛି । ଆତ୍ମରକ୍ଷାର ସବୁଠାରୁ ସହଜ ଓ ବ୍ୟାପକ ନିୟୋଜିତ ଉପାୟ ହେଉଛି, ବିପଦଠାରୁ ପଳାୟନ କରିବା । ଝିଟିପିଟି ଶ୍ରେଣୀର ସରୀସୃପମାନେ ଚୁପ୍‌ଚାପ୍ ନିରାପଦ ସ୍ଥାନକୁ ଖସି ପଳାଇ ଯାଆନ୍ତି । ଉଡ଼ନ୍ତା ଏଣ୍ଡୁଅମାନେ ଏହି ପ୍ରକୃତିର । ଏମାନେ ପଛଗୋଡ଼ ସାହାଯ୍ୟରେ ମାଟି ଉପରେ ଅତିବେଗରେ ଦଉଡ଼ି ପଳାଇ ଯାଆନ୍ତି । ନଈ ବା ପୋଖରୀର ତଳକୁ, ଗଭୀରତମ ସ୍ଥାନକୁ ସେମାନେ ପହଁରି ପହଁରି ବୁଡ଼ିଯାଇ ପାରନ୍ତି । କେତେକ ଏହି ଶ୍ରେଣୀର ସରୀସୃପ ପାଣି ଉପରେ ଧାଇଁଯାଇପାରନ୍ତି ବା ଗାତଖୋଳି ମାଟିଭିତରକୁ ପଶିଯାଇ ପାରନ୍ତି ।

ମରୁଭୂମିଠାରୁ ଚିରହରିତ୍ ଜଙ୍ଗଲଦେଇ ହିମାଳୟର 5000 ମିଟର ଉଚ୍ଚତା ପର୍ଯ୍ୟନ୍ତ ଭାରତର ସବୁ ଅଞ୍ଚଳରେ ଝିଟିପିଟି ଶ୍ରେଣୀ ପରିବ୍ୟାପ୍ତ । ଭାରତରେ ଏ ଶ୍ରେଣୀର ଜୀବମାନେ ବିଷାକ୍ତ ନୁହନ୍ତି । ସେମାନେ ମୁଖ୍ୟତଃ କୀଟପତଙ୍ଗଆଦି ଖାଆନ୍ତି । କେତେକ ସାନ ସାନ ଜନ୍ତୁଧରି ଖାଆନ୍ତି ଓ ଆଉ କେତେକ ତୃଣଭୋଜୀ ପ୍ରକୃତିର ।



## ଗୋଧି

*Varanus bengalensis* (Daudin)

ଭାରତବର୍ଷର ପ୍ରାୟ ସବୁପ୍ରକାର ଅଞ୍ଚଳରେ ଗୋଧି ଦେଖିବାକୁ ମିଳନ୍ତି । ବୟସ୍କ ଗୋଧିର 70 ରୁ 75 ସେଣ୍ଟିମିଟର ଲମ୍ବ ଦେହ ଓ 100 ସେଣ୍ଟିମିଟର ଲମ୍ବ ଲାଞ୍ଜ ଥାଏ । ଦେହରେ କେତେକ ଫିକା କଳାରଙ୍ଗର ପଟାପଟା କିମ୍ବା ଆଡ଼ି ଚିହ୍ନ ଥାଏ । ମୁଣ୍ଡ ଉପରର କାତିଗୁଡ଼ିକ ଟିକେ ବଡ଼ । ଦାନ୍ତଗୁଡ଼ାକ ଲମ୍ବା ଓ ଦାନ୍ତୁଆ । ଜିଭଟି ଅତ୍ୟଧିକ ଲମ୍ବ ଓ ଦୁଇଫାଳିଆ ହୋଇଥାଏ ।

ଘନରେ ରହୁଥିବା ଛୋଟ ମେରୁଦଣ୍ଡୀ ପ୍ରାଣୀ, ଝିଆ, ମାଛ, ଚଢ଼େଇ ଓ ସେମାନଙ୍କ ଅଣ୍ଡା ଇତ୍ୟାଦି ଗୋଧିର ଆହାର । ଚମଡ଼ା ବ୍ୟବସାୟ ପାଇଁ ଗୋଧି ଶିକାର ଏମାନଙ୍କ ସଂଖ୍ୟା ବିପଜ୍ଜନକ ଭାବେ ହ୍ରାସ କରାଇଛି ।

## ପାଣି ଗୋଧି

*Varanus salvator* (Laurenti)

ଭାରତୀୟ ଉପମହାଦେଶ ସାରା, ସବୁଆଡ଼େ ପାଣି ଗୋଧି ଦେଖାଯାଥାନ୍ତି । ଗୋଧି ଜାତୀୟ ଜୀବମାନଙ୍କ ଭିତରେ ଏ ହେଉଛନ୍ତି ପୃଥିବୀର ଦ୍ୱିତୀୟ ବୃହତ୍ତମ ପ୍ରାଣୀ । ଇଣ୍ଡୋନେସିଆର "କୋମୋଡ଼ୋ ଡ୍ରାଗନ" ହେଉଛି ବୃହତ୍ତମ । ପାଣି ଗୋଧି 3 ମିଟରେ ପର୍ଯ୍ୟନ୍ତ ଲମ୍ବ ହୋଇଥାଏ । ଏହାର ମୁଣ୍ଡ ଗୋଳିଆ ଓ ସରୁ ହୋଇ ଲମ୍ବା ବେକଯୁକ୍ତ । ଦେହସାରା ଛୋଟଛୋଟ କାତି ଗୋଟିଏ ପରେ ଗୋଟିଏ ଚଢ଼ାଚଢ଼ି ହୋଇ ଭରି ରହିଥାଏ । ଦେହର ରଙ୍ଗ ଗାଢ଼ ବାଇଗଣି । ଚର୍ମରେ ହଳଦିଆ ଛାପିଛାପିକା ଦାଗମାନ ଥାଏ । ଏମାନେ ସର୍ବଗ୍ରାସୀ ପ୍ରାଣୀ, ମାତ୍ର ମାଛ ଓ ଚଢ଼େଇର ଅଣ୍ଡା ଖାଇବାକୁ ଖୁବ୍ ଭଲ ପାଆନ୍ତି । ସନ୍ତସନ୍ତିଆ ଜଙ୍ଗଲମି, ଆର୍ଦ୍ରତା ଥିବା ଅଞ୍ଚଳ, ନଈକୂଳ ଓ ମୁହାଣର ମୁହଁ ବା ଲୁଣାଜଙ୍ଗଲ ମାନଙ୍କରେ ସାଧାରଣତଃ ଏମାନେ ବାସ କରନ୍ତି ।

ଚମଡ଼ା ବ୍ୟବସାୟ ଯୋଗୁଁ ଏହି ପ୍ରାଣୀମାନଙ୍କର ସଂଖ୍ୟା ଅତ୍ୟଧିକ ଭାବରେ ହ୍ରାସ ପାଇଗଲାଣି । ଭାରତୀୟ ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍ ଅନୁଯାୟୀ ଏମାନଙ୍କୁ ପ୍ରଥମଶ୍ରେଣୀ ତାଲିକାଭୁକ୍ତ କରାଯାଇ ସୁରକ୍ଷିତ ପ୍ରାଣୀଭାବରେ ଘୋଷଣା କରାଯାଇଛି ।

## ହଳଦିଆ ଗୋଧି

*Varanus flavescens* (Gray)

ପଞ୍ଜାବଠାରୁ ପଶ୍ଚିମବଙ୍ଗ ପର୍ଯ୍ୟନ୍ତ ଉତ୍ତରଭାରତ ସାରା ଏହି ଜାତିର ଗୋଧି ଦେଖାଯାଆନ୍ତି । ଗାଢ଼ ବାଦାମୀରଙ୍ଗର ଦେହରେ ଲାଲର ଛଟା, ଛୋଟ ଥୋମଣି ଓ ଲାଞ୍ଜଟା ହୋଇରେ ଚେପ୍‌ଟା ହୋଇ ବେଶ୍ ଲମ୍ବା । ଏହା ଦକ୍ଷ ପହଁରାଳି । ମଧୁରଜଳର କଙ୍କଡ଼ା ଓ ଛୋଟ ମାଛମାନେ ଏହାର ଖାଦ୍ୟ । ସୁନ୍ଦରଚମଡ଼ାର ବ୍ୟାବସାୟିକ ଚାହିଦା ଥିବାରୁ ଏମାନଙ୍କ ସଂଖ୍ୟା ବିଲୁପ୍ତ ହୋଇ ଆସୁଛି ।

### ଭାରତୀୟ ମରୁ ଗୋଧି

*Varanus griseus* (Daudin)

ରାଜସ୍ଥାନ, ପଞ୍ଜାବ, ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶର ଶୁଷ୍କାଞ୍ଚଳରେ ଭାରତୀୟ ମରୁଗୋଧି ଦେଖାଯାଆନ୍ତି । ଦେହର ରଙ୍ଗ ହରିଦ୍ରାଭ ରକ୍ତବର୍ଣ୍ଣ ବା ଧୂସର ବାଦାମୀ ରଙ୍ଗ । ତହିଁରେ ଗାଢ଼ଧୂସର ବା ଧୂସର ବାଦାମୀରଙ୍ଗର ଛୋଟଛୋଟ ଦାଗ ଥାଏ । ଚାବୁକ୍ ଭଳି ଲାଞ୍ଜଟା ଗୋଲ ଓ ଏଥିରେ ବାଦାମୀରଙ୍ଗର ଗାରଗାର ଚିହ୍ନ ଥାଏ । ମରୁଗୋଧି ଗାତରେ ରହେ ଓ କୀଟପତଙ୍ଗ, ଝିଣ୍ଟିକା, ଝିଙ୍କାରୀ ଓ ଛୋଟ ମେରୁଦଣ୍ଡୀ ପ୍ରାଣୀମାନଙ୍କୁ ଖାଏ । ଚମଡ଼ା ଲୋଭରେ ଏମାନଙ୍କୁ ବହୁସଂଖ୍ୟାରେ ହତ୍ୟା କରାଯାଉଛି । ଫଳରେ ଏମାନଙ୍କ ସଂଖ୍ୟା ହ୍ରାସ ପାଇଗଲାଣି ।

## ସାପ (SNAKES)

ସରୀସୃପଙ୍କ ମଧ୍ୟରେ ସାପକୁ ମଣିଷ ସର୍ବାଧିକ ଭୟ କରେ । ଅନେକ ଲୋକ ସାପକୁ ଅବିଶ୍ୱାସୀ, ଭୟଙ୍କର ଓ ବିପଦଜନକ ଜନ୍ତୁ ବୋଲି ଭାବନ୍ତି । ସେ ଯାହାହେଉ, ପ୍ରକୃତରେ କିନ୍ତୁ ସାପମାନେ ଭୟଙ୍କର ନୁହନ୍ତି କିମ୍ବା ଅବିଶ୍ୱାସୀ ନୁହନ୍ତି । ଅନେକ ସାପ ଏତେ ସୁନ୍ଦର ଯେ, ଦେଖିଲେ ଆନନ୍ଦ ଲାଗେ । ସେମାନଙ୍କର ଚମତ୍କାର ଚୋରିଆରଙ୍ଗ ଓ ରମଣୀୟ ସରୁ ନକ୍ସାର ଦେହ ଯୋଗୁଁ କେତେକ ଅତ୍ୟନ୍ତ ସୁନ୍ଦର ଦିଶନ୍ତି । ସାପକୁ ଦେଖିଲେ ହୁଏତ ମନମୁଗ୍ଧ ହୋଇଯାଏ, କିମ୍ବା ଭୟଲାଗେ, ଅଥବା ଉଭୟପ୍ରକାରର ପ୍ରତିକ୍ରିୟା ମନ ଭିତରେ ସୃଷ୍ଟି ହୁଏ ।

ପୃଥିବୀରେ ପ୍ରାୟ ତିନିହଜାର ପ୍ରକାରର ସାପ ଅଛନ୍ତି । ସେଥିରୁ ଏକ ତୃତୀୟାଂଶରୁ ମଧ କମ୍‌ସଂଖ୍ୟକ ସାପଙ୍କର ବିଷଗ୍ରନ୍ଥି ଅଛି । ତା'ର ଅଳ୍ପସଂଖ୍ୟକ ସାପ ମଣିଷ ପକ୍ଷରେ କ୍ଷତିକାରକ । ଏମାନେ ପ୍ରାୟତଃ ମଣିଷଠାରୁ ଦୂରେଇ ରହନ୍ତି । ଯେତେବେଳେ ସେମାନେ ନିଜକୁ ବିପଦାପନ୍ନ ମନେ କରନ୍ତି, ସେତିକିବେଳେ ମଣିଷକୁ ଆକ୍ରମଣ କରନ୍ତି ବା କାମୁଡ଼ନ୍ତି । କୀଟ, ପତଙ୍ଗ, ମୂଷା, ଠେକୁଆ, ପକ୍ଷୀ, ଝିଟିପିଟି ଓ କେତେକ କ୍ଷେତ୍ରରେ ବଡ଼ ସ୍ତନ୍ୟପାୟୀ ପ୍ରାଣୀମାନଙ୍କୁ ସାପମାନଙ୍କର ଖାଦ୍ୟତାଲିକାଭୁକ୍ତ କରାଯାଇପାରେ । ଖାଦ୍ୟଶସ୍ୟ ଓ ଅନ୍ୟାନ୍ୟ ଉଦ୍ଭିଦଖାଦ୍ୟ ନଷ୍ଟ କରୁଥିବା ମୂଷା ଜାତୀୟ ପ୍ରାଣୀମାନଙ୍କୁ ମାରି ଖାଇଯିବା ଦ୍ୱାରା ସାପମାନେ ମଣିଷ ସମାଜ ପାଇଁ ବହୁମୂଲ୍ୟ ଉପକାର କରନ୍ତି ।

ସାପମାନେ ଦକ୍ଷ ଶିକାରୀ ବା ହତ୍ୟାକାରୀ ହୋଇଥିବାରୁ ସେମାନଙ୍କର ତୀକ୍ଷ୍ଣ ଚେତନାଶକ୍ତିର ଆବଶ୍ୟକତା ଅଛି । ଗୋଡ଼ ନଥିବା ହେତୁ ସାପମାନଙ୍କୁ ମାଟିଉପରେ ପେଟେଇ କିମ୍ବା ଘୁଷୁଡ଼ି ଘୁଷୁଡ଼ି ଯିବାକୁ ପଡ଼େ । କେତେକ ଗାତୁଆ ସାପଙ୍କୁ ଛାଡ଼ିଦେଲେ ଅଧିକାଂଶ ସାପଙ୍କର ଦୃଷ୍ଟିଶକ୍ତି ଖୁବ୍ ତୀକ୍ଷ୍ଣ । ସେମାନଙ୍କର ଆଖିପତା ନାହିଁ । ମାତ୍ର ଆଖିଗୁଡ଼ିକ ସ୍ୱଚ୍ଛ କାତିଦ୍ୱାରା ଘୋଡ଼େଇ ହୋଇଥାଏ । ଯେଉଁ ସାପମାନେ ଦିନବେଳା ଶିକାର କରିପାରନ୍ତି ସେମାନଙ୍କ ଆଖିର ପୁଅଗୁଡ଼ିକ ଗୋଲାକାର । ନିଶାଚର ସାପମାନଙ୍କ ଆଖିପୁଅ ବିରାଡ଼ିପରି ଠିଆଠିଆ ଓ ଅଣ୍ଡାକୃତି ହୋଇଥାଏ ।

ଏହାର ଘ୍ରାଣ ଶକ୍ତି ଅତିପ୍ରଖର । ଏହି ଶକ୍ତିବଳରେ ସାପ ତା ଶିକାର ପଛରେ ଗୋଡ଼େଇପାରେ । ଏବଂ ଆପଣା ଜାତିର ଅନ୍ୟମାନଙ୍କୁ ଜାଣିପାରେ । ଏହାର ଦୁଇଫାଳିଆ ଜିଭଟି ସ୍ପର୍ଶ ଓ ଆଘ୍ରାଣର ଏକ କୋମଳ ଯନ୍ତ୍ରପରି କାମ କରେ । ସାପମାନଙ୍କର କର୍ଣ୍ଣପଟହ ନାହିଁ । ମାତ୍ର ଭୂମିର ସ୍ପନ୍ଦନ ମାଧ୍ୟମରେ ସଞ୍ଚରିତ ଶବ୍ଦକୁ ସେ ଗ୍ରହଣ କରିପାରେ । ଉଦାହରଣ ସ୍ୱରୂପ ଗୋଖୁର ସାପ କେଳାର ବଂଶୀ ଶୁଣିପାରେ ନାହିଁ ମାତ୍ର ବଂଶୀଚାଳନା ଅନୁସାରେ ସେ ଦୋହଲେ । ଶବ୍ଦ ଅନୁସାରେ ନୁହେଁ ।

ସାପମାନଙ୍କର ମାଢ଼ି ଅତି ନମନୀୟ, ତେଣୁ ସେମାନେ ପାଟିକୁ ବଡ଼କରି ଖୋଲିପାରନ୍ତି । ଦାନ୍ତଗୁଡ଼ିକ ମୁନିଆ ହୋଇ ପଛପଟକୁ ବାଙ୍କିଥାଏ । ତେଣୁ ସେ ଶିକାରକୁ ଶକ୍ତକରି ଧରି ରଖିପାରେ । ଫଳରେ ଶିକାର ଖସିଯାଇପାରେନାହିଁ । ବାରହା ହେଉ ବା ହରିଣ ହେଉ, ଯାହା ପାଆନ୍ତି, ସାପମାନେ ସେମାନଙ୍କ ଖାଦ୍ୟକୁ ପୂରା ଗିଳି ଦିଅନ୍ତି ।

ସାରା ପୃଥିବୀରେ 2500ରୁ ଅଧିକ କିସମର ସାପ ଥିବା ସ୍ଥଳେ ଭାରତରେ 200ରୁ ଅଧିକ ପ୍ରକାରର ସାପ ଅଛନ୍ତି । ମାତ୍ର ସାଧାରଣତଃ 4 ଜାତିର ବିଷଧର ସାପ ଭାରତରେ ଦେଖିବାକୁ ମିଳନ୍ତି । ଏମାନେ ହେଲେ ଚିତି, ନାଗ, ଚନ୍ଦନବୋଡ଼ା ଓ କଟକଟିଆ ନାଗ । ଏମାନଙ୍କୁ ଚିହ୍ନିଶିଖିବା ହେଉଛି ପ୍ରଧାନ କଥା । ଭାରତର ସବୁଠାରୁ ବିଷଧର ସାପ ହେଉଛି ଚିତି । ପୃଥିବୀର ସବୁ ସାପ ଭିତରେ ଅଷ୍ଟ୍ରେଲିଆର ବାଘୁଆ ସାପ ହେଉଛି ସର୍ବାଧିକ ବିଷାକ୍ତ । ଏକାଜାତିର ମାଈ ଓ ଅଣିରା ସାପମାନେ ସଂଗମରତ ହୁଅନ୍ତି । ନାଗ ବା ଚିତି ଭଳି ସାପମାନେ ଅଣ୍ଡା ଦିଅନ୍ତି । ମାତ୍ର ବାଲିବୋଡ଼ା, ଲାଉଡ଼ଙ୍କିଆ ଓ ଚନ୍ଦନବୋଡ଼ା ସାପମାନେ ଛୁଆ ଦିଅନ୍ତି ।

ସାଧାରଣତଃ ସାପମାନେ 10ରୁ 20ବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି । କ୍ୱଚିତ୍ 30ବର୍ଷରୁ ଅଧିକ କାଳ ସାପ ବଞ୍ଚିଥିବାର ଶୁଣାଯାଏ ।

ସାପମାନେ ପ୍ରତିଶୋଧ ନେବା କଥା ଭାରତରେ ଏକ ସାଧାରଣ ପୌରାଣିକ କାହାଣୀ । ତୁମେ ଯଦି ସାପକୁ ମାରିବ, ତାହେଲେ ତା'ର ଯୋଡ଼ି ଆସି ତୁମକୁ କାମୁଡ଼ିବ । ଏହା ଆଦୌ ସତ୍ୟନୁହେଁ । ପ୍ରତିଶୋଧ ପରାୟଣତା ବୋଧହୁଏ ପୂରାପୂରି ଏକ ମାନବୀୟ ମାନସିକ ଉତ୍ତେଜନା ।

ପୁଣି, ନାଗସାପ ମୁଣ୍ଡରେ ମଣି ଥିବାର ସାଧାରଣ ବିଶ୍ୱାସ ମଧ୍ୟ ସମ୍ପୂର୍ଣ୍ଣ ଭୁଲ କଥା । ତାମିଲନାଡ଼ୁର ଇରୁଲା ସାପଧରାଳି ମାନେ ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ଉତ୍ତର ଦିଅନ୍ତି- ''ଯଦି ସାପ ମୁଣ୍ଡରେ ମଣି ଥାଆନ୍ତା, ତା'ହେଲେ ଇରୁଲାମାନେ ଗରିବ ସାପଧରାଳୀ ନହୋଇ ମହାରାଜା ହୋଇଥାଆନ୍ତେ ।''

ବାସସ୍ଥଳୀ ବିଧ୍ୱଂସନ, ଅଜ୍ଞତା, ସାପଦେଖିବା ମାତ୍ରେ ମାରିଦେବାର ମାନବିକ ପ୍ରବୃତ୍ତି ଓ ଚମଡ଼ା ବ୍ୟବସାୟ ଯୋଗୁଁ ଭାରତରେ ଥିବା ବହୁଜାତିର ସାପ ଦୁଷ୍ପ୍ରାପ୍ୟ ଓ ବିପନ୍ନ ହୋଇପଡ଼ିଛନ୍ତି । ବିପନ୍ନ ସାପମାନଙ୍କ ମଧ୍ୟରୁ କେତେକଙ୍କ ବିଷୟରେ ନିମ୍ନରେ ବର୍ଣ୍ଣନା କରାଯାଉଛି ।

## ଭାରତୀୟ ପାହାଡ଼ି ଅଜଗର

*Python molurus* (Linnaeus)

ଅଜଗର ଭାରତବର୍ଷର ଏକ ସାଧାରଣ ସାପ । ଏହା ସାରା ଦେଶରେ ଥିବା ଝାଡ଼ ଜଙ୍ଗଲ, ଗୁଳ୍ମାଚ୍ଛନ୍ନ ଓ ଘଞ୍ଚ ଅରଣ୍ୟ ମାନଙ୍କରେ ଦେଖାଯାଏ । ଏହା ଖୁବ୍ ବଡ଼ ଏବଂ ଓଜନିଆ ସାପ, ଯାହାର ଲମ୍ବ ସାତମିଟରେ ପର୍ଯ୍ୟନ୍ତ ହୋଇଥାଏ । ଦେହର ରଙ୍ଗ ଗାଢ଼ ବାଦାମୀ ଓ ପିଠି ସାରା ଚତୁର୍ଭୁଜାକୃତି କଳା ଡାଲି ଚିହ୍ନ ଥାଏ । ମୁଣ୍ଡରେ ଗୋଟିଏ ବର୍ଚ୍ଛୀପରି ଚିହ୍ନ ଏହାକୁ ଅନ୍ୟ ସାପମାନଙ୍କଠାରୁ ପୃଥକ୍ କରେ । ଏହା ଏକ ଦକ୍ଷ ପହଁରାଳି ଓ ଗଛଚଢ଼ାଳି । "ପାଇଥୋନିଡ଼େ" ପରିବାରର ସାପମାନେ ଠିକ୍ ବୋଡ଼ା ସାପ ପରି । ମାତ୍ର ସେମାନଙ୍କର ଆଖି ଉପରକୁ ଥିବା ଖପୁରିର ଆଖିଖୋପରେ ଗୋଟିଏ ଅଧିକ ହାଡ଼ ଅଛି । ଅଜଗର ପରିବାରର ଅଧିକାଂଶ ସଭ୍ୟ ରାତିରେ ବୁଲିବାକୁ ଭଲପାଆନ୍ତି । ସାଧାରଣତଃ ଏମାନେ ଜଳର ପାଖାପାଖି ଅଞ୍ଚଳରେ ଦେଖାଯାଆନ୍ତି ।

ବେଙ୍ଗ, ସରୀସୃପ, ସ୍ତନ୍ୟପାୟୀ ପ୍ରାଣୀ ଓ ପକ୍ଷୀମାନଙ୍କୁ ପାହାଡ଼ି ଅଜଗର ଗିଳିଦିଏ । ଯାହା ହେଉ, ଏହା ଏକ ବିଷହୀନ ସାପ । ଅବୈଧ ଚମଡ଼ା ବ୍ୟବସାୟୀ ମାନଙ୍କ ଦାଉରେ ଏ ଜାତିର ସାପମାନଙ୍କ ସଂଖ୍ୟା ପ୍ରବଳ ଭାବରେ ହ୍ରାସ ପାଇଗଲାଣି । ତେଣୁ ଭାରତୀୟ ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍ ଅନୁଯାୟୀ ଏହା ସୁରକ୍ଷିତ ପ୍ରାଣୀଭାବରେ ବିବେଚିତ ହୋଇଛି ।

## ଜାଲିଆ ଅଜଗର

*Python reticulatus* (Schneider)

ରାଜା ଅଜଗର ବା ଜାଲିଆ ଅଜଗର ହେଉଛି ଭାରତୀୟ ସାପମାନଙ୍କ ମଧ୍ୟରେ ସବୁଠାରୁ ବଡ଼ ସାପ । ଏହାର ଲମ୍ବ ଦଶ ମିଟରେ ପର୍ଯ୍ୟନ୍ତ ହୋଇଥାଏ । ଏହା ଦେଖିବାକୁ ପାହାଡ଼ି ଅଜଗର ଭଳି, ମାତ୍ର ପିଠିପଟେ ଏହାର ରଙ୍ଗ ହଳଦିଆ ବାଦାମୀ, କଳାରଙ୍ଗ ସହିତ ମିଶି ପର୍ଯ୍ୟାୟ କ୍ରମେ ପିଠିସାରା ଗାଢ଼ ବାଦାମୀରଙ୍ଗର ଗୋଲାକାର ବା ଚତୁର୍ଭୁଜାକୃତି ଦାଗମାନଙ୍କ ଧାରରେ କଳା ବା ହଳଦୀ ରଙ୍ଗ ଥାଇ ଚିତ୍ରିତ ହୋଇଥାଏ । କୁକୁଡ଼ା, ହଂସରାଳି, ବିରାଡ଼ି, କୁକୁର ଓ ଘୁଷୁରୀ ଆଦି ଏହାର ଖାଦ୍ୟ । ଏହା ବିଷହୀନ ସାପ । ମୁଖ୍ୟତଃ ଭାରତର ଉତ୍ତରପୂର୍ବାଞ୍ଚଳ ଓ ନିକୋବର ଦ୍ୱୀପ ପୁଞ୍ଜରେ ଏହା ଦେଖାଯାଏ । ଚମଡ଼ା ବ୍ୟବସାୟ ଯୋଗୁଁ ଜାଲିଆ ଅଜଗର ଏବେ ବିପନ୍ନ ହୋଇପଡ଼ିଛି ।

## ଭାରତୀୟ ଅଣ୍ଡାଖିଆ ସାପ

*Elachistodon westermanni* (Reinhardt)

ଭାରତୀୟ ଅଣ୍ଡାଖିଆ ସାପ ଏକ ଦୁଷ୍ପ୍ରାପ୍ୟ ଜାତିର ସର୍ପ । ପକ୍ଷୀ ଓ ସରୀସୃପମାନଙ୍କର ଅଣ୍ଡା ଏହାର

ପ୍ରଧାନ ଖାଦ୍ୟ ହୋଇଥିବାରୁ ଏପରି ନାମକରଣ ହୋଇଛି । ଲମ୍ବା ହୋଇ ଏହା ଦେଖିବାକୁ ବିରାଡ଼ିଆ ସାପ ପରି । ଦେହର ବଳକା ଅଂଶଠାରୁ ଏହାର ମୁଣ୍ଡ ପରିଷାର ଭାବରେ ବାରି ହୁଏ ନାହିଁ । ଦେହର ରଙ୍ଗ ମୁଖ୍ୟତଃ ଈଷତ୍ କଳା । ତହିଁରେ ପିଠି ଉପରୁ ହଳଦିଆ ପଟାପଟା ଗାର ବେକ ପର୍ଯ୍ୟନ୍ତ ପଡ଼ିଥାଏ । ତାପରେ ଆଖି ଉପର ଦେଇ ଓ ଆଖିକୋଣରୁ ବେକ ପର୍ଯ୍ୟନ୍ତ କଳାଗାରିଆ ଦାଗମାନ ପଡ଼ିଥାଏ ।

ଏହି ସାପର ପାଟି ଅଣ୍ଡା ଖାଇବା ଲାଗି ସ୍ୱତନ୍ତ୍ର ଭାବେ ଗଠିତ ହୋଇଛି । ହାରମୋନିୟମର ପଟାପଟା ପାତିଆ ପରି ପାଟି ର ଆସ୍ତରଣ ଏବଂ ସଂକୋଚନ ଓ ପ୍ରସାରଣକ୍ଷମ ତଣ୍ଟି ଯୋଗୁଁ ଦେହର ବ୍ୟାସ ଅପେକ୍ଷା ତିନି ଚାରିଗୁଣ ବଡ଼ ଅଣ୍ଡାଗୁଡ଼ିକ ଗିଳିଦେବା ଲାଗି ସୁବିଧା ହୁଏ । ସାପର ତଣ୍ଟି ହାଡ଼ ଉଠି ଆସିଥିବା କଣ୍ଟା ପରି ଗଳା ଭିତରକୁ ପଶି ଆସିଥାଏ । ତଣ୍ଟି ଭିତର ଦେଇ ଅଣ୍ଡା ଠେଲି ହୋଇଗଲାବେଳେ ଏହି ହାଡ଼ୁଆ ଅଂଶଦ୍ୱାରା କାଟି ହୋଇଯାଏ । ସାପ ତା ତଣ୍ଟିରେ ମାଂସପେଶୀ ଗୁଡ଼ିକ ଚାପି ଦେବାଦ୍ୱାରା ଅଣ୍ଡା ଚିପି ହୋଇ ତହିଁରେ ଥିବା ତରଳପଦାର୍ଥ ପାଟି ଭିତରକୁ ଚାଲିଯାଏ ।

## ଉଭୟଚର (Amphibians)

ଗ୍ରୀକ୍ ଶବ୍ଦ ''ଆମ୍ଫିବିଆନ୍''(Amphibian)ର ଅର୍ଥ ''ଦ୍ୱୈତଜୀବନ'' । ଏହି ପରିବାରର ସଦସ୍ୟମାନେ ଉଭୟ ଜଳ ଓ ସ୍ଥଳଭାଗରେ ରହିବାକୁ ସମର୍ଥ । ଅଧିକାଂଶ କ୍ଷେତ୍ରରେ ଲାର୍ଭା ବା ଶିଶୁମାନେ ପ୍ରାୟତଃ ଜଳବାସୀ । ପ୍ରାୟ 35 କୋଟି ବର୍ଷପୂର୍ବେ ''କ୍ରସୋପେଟେରିଜିଆନ୍'' ନାମକ ପୁରାତନ ମାଛରୁ ଏହି ପ୍ରାଣୀମାନେ ବିକାଶଲାଭ କରିଛନ୍ତି । ଏଗୁଡ଼ିକ ହେଲେ, ''କଡ଼ାଟା''(Caudata) ବା ''ୟୁରୋଡ଼େଲା'' (Urodela), ଯାହାର ଉଦାହରଣ ହେଲା- ଚଳଗୋଧି ଓ ପୁରାତନ ଜଳଚର ଝିଟିପିଟି । ସାଲିଏନ୍ସିଆ (Salientia) ବା ଅନୁରା(Anura)- ବେଙ୍ଗ ଓ ଲୁଣିବେଙ୍ଗପରି ଜିମ୍ନୋଫୋନିଆ (Gymnophonia) - ଜିଆନାଳ ଜାତିର ପ୍ରାଣୀ ।

ଉଭୟଚର ମାନଙ୍କର ଚମଡ଼ା ସାଧାରଣତଃ ଆର୍ଦ୍ର, ସେମାନେ ସୂର୍ଯ୍ୟାଲୋକ ଅଧିକ ସମୟ ସହ୍ୟ କରିପାରନ୍ତି ନାହିଁ । ଏମାନେ ଉଭୟ ଫୁସ୍‌ଫୁସ୍ ଓ ଚମଡ଼ା ଦେଇ ଶ୍ୱାସ ପ୍ରଶ୍ୱାସ ନେଇ ପାରନ୍ତି । ସରୀସୃପ ପରି ସ୍ଥଳରେ ଅଣ୍ଡା ନ ଦେଇ, ଏମାନେ ପାଣିରେ ଅଣ୍ଡା ଦିଅନ୍ତି ।

ବେଙ୍ଗ ଓ ଲୁଣିବେଙ୍ଗମାନେ ସାଧାରଣତଃ ପ୍ରଚୁର ଅଣ୍ଡା ଦିଅନ୍ତି । ମାତ୍ର, ସେଥିରୁ ଅପେକ୍ଷାକୃତ ଅଳ୍ପ ଅଣ୍ଡା ବଞ୍ଚିରହେ । ଅନେକ ବେଙ୍ଗଙ୍କ କ୍ଷେତ୍ରରେ ଅଣ୍ଡାଦେବା ଓ ଗର୍ଭାଧାନ କରିବା ଏକ ନିର୍ଦ୍ଧାରିତ ଢାଞ୍ଚାରେ ହୋଇଥାଏ । ପୁରୁଷ ବେଙ୍ଗ ଯେତେବେଳେ ସ୍ତ୍ରୀ ବେଙ୍ଗର ବେକପାଖରୁ ଜାବୁଡ଼ିଧରେ, ସ୍ତ୍ରୀ ବେଙ୍ଗ ତାର ଅଣ୍ଡା ଗୁଡ଼ିକ ପାଣି ଭିତରେ ଛାଡ଼େ ଏବଂ ସେ ଅଣ୍ଡା ଗୁଡ଼ିକ ପୁରୁଷ ବେଙ୍ଗ ଦ୍ୱାରା ନିଷିକ୍ତ ହୁଅନ୍ତି । ସଙ୍ଗମ ଋତୁରେ ବହୁ କିସମର ଅଣିରା ବେଙ୍ଗମାନଙ୍କର

ବୁଢ଼ା ଆଙ୍ଗୁଠିରେ କଣ୍ଟା ବା ଶିଙ୍ଗପରି ଅଙ୍ଗ ଗଜୁରି ଉଠେ । ମାଈବେଙ୍ଗର ଚିକ୍କଣ ଦେହକୁ ଜାବୁଡ଼ି ଧରିବାରେ ଅଣ୍ଡିରା ବେଙ୍ଗକୁ ଏହା ସାହାଯ୍ୟକରେ ।

ଜଳଗୋଧିମାନଙ୍କର ଲାଞ୍ଜ ଆଜୀବନ ରହିଥାଏ । ତେଣୁ ସେମାନଙ୍କୁ "ୟୁରୋଡ଼େଲା" ବା ଦୃଶ୍ୟମାନ ଲାଞ୍ଜଯୁକ୍ତ ପ୍ରାଣୀ ବୋଲି କୁହାଯାଏ । ସେମାନେ ଝିଟିପିଟି ପରି ଦେଖାଯାଆନ୍ତି । ମାତ୍ର ଝିଟିପିଟିର ଶୁଖିଲା କାତିଯୁକ୍ତ ଚର୍ମ ତାକୁ ଜଳଗୋଧିଠାରୁ ପୃଥକ୍ ବୋଲି ଦର୍ଶାଏ । ଜଳଗୋଧିର ଚମଡ଼ା ଗ୍ରନ୍ଥିଯୁକ୍ତ ଓ ମସୃଣ ହୋଇଥାଏ । ବେଙ୍ଗମାନେ ସଙ୍ଗମରତ ହେଲାବେଳେ ଯେପରି ଶବ୍ଦ କରନ୍ତି, ତାହା ଜଳଗୋଧି ମାନଙ୍କର ନଥାଏ । କେତେ ଜାତିର ଉଭୟଚର ମୂକ ଅଟନ୍ତି । ସେମାନଙ୍କର ଶ୍ରବଣଶକ୍ତି ମଧ ଖୁବ୍ କମ୍ । ଜଳଚର ଝିଟିପିଟିମାନଙ୍କର କାନ ଥିବାର କୌଣସି ପ୍ରମାଣ ନାହିଁ । ଅନେକ ଜଳଗୋଧି ଅତି ଉନ୍ନତ ପୂର୍ବରାଗ ପ୍ରଦର୍ଶନ କରିବାର ଜଣାଯାଏ ।

ବେଙ୍ଗପରି କେତେକ ଆଦିମ ଜାତିର ଉଭୟଚର ଅଣ୍ଡାଦେଇ ତା'ର ବାହ୍ୟ ଗର୍ଭାଧାନ କରାଉଥିବାବେଳେ ଜଳଗୋଧିର ଅନ୍ତର୍ନିହିତ ଗର୍ଭାଧାନ ହୋଇଥାଏ । ଉଚ୍ଚତର ପ୍ରାଣୀମାନଙ୍କ ପରି ସିଧାସଳଖ ଏହା ଘଟେନାହିଁ । ପୁରୁଷ ଜଳଗୋଧି ସ୍ତ୍ରୀକୁ ପୂର୍ବରାଗ ପ୍ରଦର୍ଶନ କରି ଆଗେଇ ନିଏ । ତା'ପରେ ସେ ଜେଲି ପରି ବୀର୍ଯ୍ୟକୀଟ ଥିବା ସ୍ପର୍ମାଟୋଫୋର ନାମକ ପୁଡ଼ିଆ ଟିଏ ଜମାଇଦିଏ । ସ୍ତ୍ରୀ ଜଳଗୋଧିର ମଳଦ୍ୱାର ଏଇ ସ୍ପର୍ମାଟୋଫୋରକୁ ଶୋଷିନିଏ । ବୀର୍ଯ୍ୟକୀଟ ଗୁଡ଼ିକ ସେହିସ୍ଥାନରେ ଅଣ୍ଡାନିର୍ଗତ ହେବା ପର୍ଯ୍ୟନ୍ତ ରହି ଗର୍ଭାଧାନ କରାଇଥାଆନ୍ତି ।

ତିନିପ୍ରକାରର ଉଭୟଚରଙ୍କ ମଧ୍ୟରେ ଲୁଣିବେଙ୍ଗମାନଙ୍କ ସଂଖ୍ୟା ସବୁଠାରୁ ବେଶି, ପ୍ରାୟ 2000 କିସମର ହେବ । ଶ୍ରେଣୀବିନ୍ୟାସ 'ଅନୁରା'ର ଅର୍ଥ 'ଲାଞ୍ଜହୀନ' । ଏହା ଉଭୟଚର ଜୀବମାନଙ୍କ ଶାରୀରିକ ଗଠନ ବିଷୟରେ ସୂଚନା ଦିଏ । ବୟସ୍କ ମାନଙ୍କର ଦେହ ଛୋଟ ଓ ଲମ୍ବ ପଛଗୋଡ଼ଗୁଡ଼ିକ ଡେଇଁବାର ଉପଯୋଗୀ ହୋଇଥାଏ ।

'ବୁଫୋ' ବର୍ଗର ଲୁଣି ବେଙ୍ଗମାନଙ୍କର ଗୋଡ଼ ଛୋଟ, କିନ୍ତୁ ବେଙ୍ଗଭଳି ଡେଇଁବାର ସାମର୍ଥ୍ୟ ନାହିଁ । ଏମାନେ ସାଧାରଣତଃ ଛୋଟ ଡିଆଁଦେଇ ଆଗକୁ ଶରୀର ଚାଳନା କରନ୍ତି । ଲୁଣିବେଙ୍ଗ କୀଟ ବା ପୋକଟାଏ ଦେଖିଲେ ଲୁଚିଲୁଚି ସତର୍କତାର ସହିତ ତା ପଛେପଛେ ଯାଏ । ତାପରେ ତାର ଲମ୍ବା ଅଠାଳିଆ ଜିଭଦ୍ୱାରା ଶିକାର ଉପରେ ମୃଦୁ ଆଘାତ କରି ତାକୁ ପାଟି ଭିତରକୁ ଟାଣି ଆଣେ । ତା' ଜିଭ ଥରକେ ପାଞ୍ଚ ସାତ ସେଣ୍ଟିମିଟର ପର୍ଯ୍ୟନ୍ତ ଲମ୍ବିଯାଇପାରେ ।

ଲୁଣିବେଙ୍ଗମାନଙ୍କ ଜୀବନର ଅଧିକାଂଶ ସମୟ ସ୍ଥଳଭାଗରେ କଟେ । କେବଳ ସଂଗମ ଋତୁରେ ଏହି ଜୀବ ପାଣି ଭିତରକୁ ଆସେ । କାଠ ବେଙ୍ଗର ଚମଡ଼ାରେ ଥିବା ଭାତୁଡ଼ି ଭଳି ଅଂଶତକ ପ୍ରକୃତରେ ହେଉଛି ଗ୍ରନ୍ଥି । ମଣିଷ ଚମଡ଼ାରେ ଉଠିଥିବା ଭାତୁଡ଼ି ପରି ଏଗୁଡ଼ିକ ବାହାରକୁ ଦିଶେ । କାଠବେଙ୍ଗକୁ ଛୁଇଁଲେ ଦେହରେ ଭାତୁଡ଼ି ହୋଇଯାଏ ବୋଲି ଥିବା ଅନ୍ଧବିଶ୍ୱାସ ପୂରା ଭୁଲ୍ କଥା ।

ବାସସ୍ଥଳୀ ବିଧ୍ୱଂସନ ସହିତ କୃଷି କାର୍ଯ୍ୟର ପ୍ରସାର ଓ ଖାଦ୍ୟଲାଗି ବେଙ୍ଗ ଗୋଡ଼ ରପ୍ତାନି

ଯୋଗୁଁ ଭାରତରେ ଉଭୟଚରମାନଙ୍କ ସଂଖ୍ୟା କ୍ରମେ ହ୍ରାସ ପାଉଛି । ନିମ୍ନୋକ୍ତ ଜାତିର ଜୀବମାନେ ଦୁଷ୍ପ୍ରାପ୍ୟ ଓ ବିପନ୍ନ ବିବେଚିତ ହୋଇଛନ୍ତି ।

### ହିମାଳୟ ଜଳଗୋଧି

*Tylototriton verrucosus* (Anderson)

ଦାର୍ଜିଲିଂ, ସିକିମ୍, ଅରୁଣାଚଳପ୍ରଦେଶ ଓ ମଣିପୁରରେ ଦେଖାଯାଉଥିବା ହିମାଳୟ ଜଳଗୋଧି ଏକ ଗାଢ଼ ବାଦାମୀ ରଙ୍ଗର ଜଳଚର ଝିଟିପିଟି ଜାତୀୟ ପ୍ରାଣୀ । ଏହାର ନଳୀପରି ଲମ୍ବା ଦେହ ମୁଣ୍ଡ ପାଖରେ ଚିପିହୋଇ ଯାଇଛି, ଯହିଁରେ ଦୁଇହଳ ଗୋଡ଼ ଓ ଉପରକୁ ସିଧାଭାବରେ ଟେପ୍ଚା ହୋଇଥିବା ଲାଞ୍ଜ ଅଛି । ମେରୁଦଣ୍ଡ ହାଡ଼ର ଦୁଇକଡ଼ରେ ଗୋବାଳିଆ ହୋଇ ଦୁଇଧାଡ଼ି ରନ୍ଧ୍ରଯୁକ୍ତ ଗ୍ରନ୍ଥି ଅଛି । ଏହା ଭାରତରେ ଦେଖାଯାଉଥିବା ଏକମାତ୍ର ଜଳଚର ଝିଟିପିଟି ସଦୃଶ ପ୍ରାଣୀ । ଏହା ଜଳଜ ଉଦ୍ଭିଦ, କୀଟମାନଙ୍କ ଅଣ୍ଡା, ବେଙ୍ଗଫୁଲା ଓ ଜିଆ ପ୍ରଭୃତି ଖାଇ ବଞ୍ଚେ ।

### ମାଲବାର ଗଛବେଙ୍ଗ

*Nectophryne tuberculosa* (Gunther)

ଏ ଜାତିର ବେଙ୍ଗ କେରଳର ମାଲାବାର ଅଞ୍ଚଳରେ ଦେଖାଯାଏ । ଏହା ଏକ ଛୋଟ ବେଙ୍ଗ, ଯାହାର ନଳୀପରି କଳାରଙ୍ଗର ଦେହ ଓ ଆଙ୍ଗୁଠି ଗୁଡ଼ିକ ପତଳା ଚମଡ଼ା ଦ୍ୱାରା ପରସ୍ପର ସଂଯୁକ୍ତ ହୋଇଥାଏ । ଅଧିକ ବୃଷ୍ଟିପାତ ହେଉଥିବା ଅଞ୍ଚଳରେ ଥିବା ଜଳାଶୟ ମାନଙ୍କର ଚତୁଃପାର୍ଶ୍ୱସ୍ଥ ବୁଦା ଓ ଗଛରେ ଏହା ଦେଖିବାକୁ ମିଳେ । ଏଇ ବେଙ୍ଗର ସ୍ୱଭାବ ଓ ବାସସ୍ଥଳୀ ବିଷୟରେ ଅଧିକ ଅନୁଧ୍ୟାନ କରାଯାଇନାହିଁ ।

### ଗାରୋପର୍ବତର ଗଛବେଙ୍ଗ

*Nectophryne kempi* (Boulenger)

ମେଘାଳୟର ଗାରୋ ପର୍ବତମାଳାରେ ଏ ଜାତୀୟ ବେଙ୍ଗ ଦେଖିବାକୁ ମିଳେ । ଏହା ଗୋଟିଏ ଛୋଟବେଙ୍ଗ ଯାହାର ବୁଢ଼ା ଆଙ୍ଗୁଠି ଗୋଲାକାର ଓ କର୍ଣ୍ଣପଟହ ଲୁକ୍କାୟିତ ଥାଏ । ଆଙ୍ଗୁଠି ଗୁଡ଼ିକରେ ଚର୍ମ ପରଦା ଲାଗିଥାଏ । ଏ ଜାତିର ବେଙ୍ଗ ବିଷୟରେ ମଧ୍ୟ ଅଧିକ କିଛି ଜଣାନାହିଁ ।

## ଅମେରୁଦଣ୍ଡୀ ପ୍ରାଣୀ (Invertebrates)

ଅମେରୁଦଣ୍ଡୀ ବା ମେରୁହାଡ଼ ନଥିବା ପ୍ରାଣୀମାନଙ୍କ ମଧ୍ୟରେ ପୋକ, ପୋଢ଼ଳା, ସମୁଦ୍ର ପୋକ, କୀଟ, ଗେଣ୍ଡା, ଶଙ୍ଖ, ତାରାମାଛଆଦିଙ୍କର ସଂଖ୍ୟା ସର୍ବାଧିକ । ପୃଥିବୀର ପ୍ରତ୍ୟେକ ଅଞ୍ଚଳରେ

ଏମାନଙ୍କୁ ଦେଖିବାକୁ ମିଳେ ଏବଂ ଏମାନେ ଜୈବ ଭିନ୍ନତାର ଏକ ଅତ୍ୟାବଶ୍ୟକ ଓ ଅପରିହାର୍ଯ୍ୟ ଅଙ୍ଗ । ଏମାନଙ୍କ ବ୍ୟତୀତ ଉଚ୍ଚ ଶ୍ରେଣୀର ପଶୁଜଗତ ତିଷ୍ଠିବା ସମ୍ଭବପର ନୁହେଁ । ଅମେରୁଦଣ୍ଡୀ ପ୍ରାଣୀମାନେ ହିଁ ସେମାନଙ୍କୁ ସମ୍ଭାଳୁଥିବା ଖାଦ୍ୟ ଶିକୁଳିର ପ୍ରଧାନ ଅଂଶ । ସେଥିଲାଗି ମେରୁଦଣ୍ଡୀ ପ୍ରାଣୀମାନଙ୍କ ଭଳି ଅମେରୁଦଣ୍ଡୀ ପ୍ରାଣୀମାନଙ୍କର ସଂରକ୍ଷଣ ଉପରେ ମଧ୍ୟ ସମାନ ଧ୍ୟାନ ଦିଆଯିବା ଆବଶ୍ୟକ । ଯାହାହେଉ, ସଂରକ୍ଷଣକାରୀମାନେ ସରୀସୃପ, ପକ୍ଷୀ ଓ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ଉପରେ ଦୃଷ୍ଟି ଦେଇଛନ୍ତି । ମାତ୍ର, ପରିବେଶ ଧ୍ୱଂସ ହେବା ଓ ଆବାସିକ ପରିବର୍ତ୍ତନ ଯୋଗୁଁ ନିମ୍ନମାନର ଜୀବମାନଙ୍କର ବଞ୍ଚିରହିବାରେ ସୃଷ୍ଟି ହେଉଥିବା ଅନ୍ତରାୟ ବିଷୟରେ ନଜର ଦେଇନାହାନ୍ତି । ଫଳରେ କେତେ ଜାତିର ଅମେରୁଦଣ୍ଡୀ ପ୍ରାଣୀ ଆବିଷ୍କୃତ ହେବା ପୂର୍ବରୁ ନିଶ୍ଚିହ୍ନ ହୋଇଯିବାର ବିପଦ ସୃଷ୍ଟି ହୋଇଛି । ଏଭଳି ବହୁସଂଖ୍ୟକ ନିମ୍ନମାନର ଜୀବମାନଙ୍କର ସ୍ଥିତି ବା ଅବସ୍ଥା ବିଷୟରେ ମଧ୍ୟ ଯଥେଷ୍ଟ ଖବର ମିଳିପାରିନାହିଁ ।

ଅମେରୁଦଣ୍ଡୀ ପ୍ରାଣୀମାନେ ବିପନ୍ନ ବା ନିଶ୍ଚିହ୍ନ ହୋଇଯିବାର ଅନେକ କାରଣ ଅଛି । ଜଙ୍ଗଲ କ୍ଷୟ, କୃତ୍ରିମ ଜଙ୍ଗଲ ସୃଷ୍ଟି, କୀଟନାଶକ ଔଷଧର ଯଥେଚ୍ଛା ବ୍ୟବହାର ଯୋଗୁଁ ତଥା ବାସସ୍ଥଳୀର ବିଧ୍ୱଂସନ ଆଦି କେତେକ କାରଣରୁ ଏହା ଘଟିଛି । ପ୍ରାଣୀ ବିଜ୍ଞାନୀ ଓ କଲେଜ ଛାତ୍ରମାନଙ୍କ ଦ୍ୱାରା ଅନିୟନ୍ତ୍ରିତ ଓ ବାରମ୍ବାର ନମୁନା ସଂଗ୍ରହ କରାଯିବାଦ୍ୱାରା ଉପକୂଳବର୍ତ୍ତୀ ସାମୁଦ୍ରିକ ଅମେରୁଦଣ୍ଡୀ ଜୀବସମ୍ପଦ ଧ୍ୱସ୍ତ ବିଧ୍ୱସ୍ତ ହେଉଛି ।

ଉଦାହରଣ ସ୍ୱରୂପ, ତାମିଲନାଡୁର କ୍ରୁସାଦି ଦ୍ୱୀପ ଓ ଲୁତୁରୀନରେ ଓଷ୍ଟା ଶାମୁକା ଓ ପୋହଳା ଆଦି ବ୍ୟବହାର କରି ଗୃହସଜ୍ଜା ଉପକରଣ ତିଆରି କରିବା ଓ ଶାମୁକାରୁ ସିମେଣ୍ଟ ତିଆରି କରିବା ଭଳି ବ୍ୟାବସାୟିକ ଉପଯୋଗ ଫଳରେ ଏ ଜାତିର ଜୀବମାନଙ୍କର ବଞ୍ଚିରହିବା ଦିଗରେ ସାଂଘାତିକ ବିପଦ ସୃଷ୍ଟି ହୋଇଛି ।

ବିପନ୍ନ ଦୁଷ୍ପ୍ରାପ୍ୟ ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ମଧ୍ୟରେ ଅନେକ ଜାତିର କୀଟ ଓ କଠିଣ ଆବରଣ ବିଶିଷ୍ଟ କଙ୍କଡାଜାତୀୟ ପ୍ରାଣୀ ଅନ୍ତର୍ଭୁକ୍ତ । ସ୍ଥଳରେ ବାସ କରୁଥିବା କଙ୍କଡ଼ାମାନଙ୍କ ଭିତରୁ ଭାରତ ଓ ପ୍ରଶାନ୍ତ ମହାସାଗର ମଧ୍ୟସ୍ଥ ଦ୍ୱୀପ ମାନଙ୍କରେ ଥିବା ନଡ଼ିଆ କଙ୍କଡ଼ା, ଦକ୍ଷିଣ ସେଣ୍ଟିନେଲ୍ ଦ୍ୱୀପ ଓ ନିକୋବର ଦ୍ୱୀପରେ ଦେଖିବାକୁ ମିଳେ ।

ଏହି ବିରାଟ ପ୍ରାଣୀର ଲମ୍ବ ଏକ ମିଟରର ତୃତୀୟାଂଶ ବା ତାଠାରୁ ଅଧିକ ହୋଇଥାଏ । ନଡ଼ିଆ ଗଛର ମୂଳରେ କୋରଡ଼ କରି ତା ମୁହଁକୁ କତାରେ ମୁଡି ଦେଇ ଭିତରେ ସେ ରହେ । ଏହାର ଆଗୁଆ ଗୋଡ଼ ଖୁବ୍ ଟାଣ ଏବଂ ଓଜନିଆ । ସେ ବଡ଼ ସାବଧାନ ଭାବରେ ନଡ଼ିଆରୁ କତା ଛଡ଼ାଇ ତାର ବଳିଷ୍ଠ ନଖଦ୍ୱାରା ସଢ଼େଇ ଭାଙ୍ଗିବା ପର୍ଯ୍ୟନ୍ତ ଗୁଳା ଉପରେ ପିଟେ । ସଢ଼େଇ ଭାଙ୍ଗିଯିବା ପରେ ସେ ନଡ଼ିଆର ମୋଟା ଶସ ବାହାର କରି ଖାଏ । ମାଂସଲାଗି ଏମାନଙ୍କୁ ବହୁସଂଖ୍ୟାରେ ମାରି ଦିଆଯାଉଛି । ଫଳରେ ଏ ଜାତିର କଙ୍କଡ଼ା ବିପନ୍ନ ହୋଇ ପଡ଼ିଛନ୍ତି ।

## କୀଟ (INSECTS)

କୀଟ ପତଙ୍ଗ ମାନଙ୍କୁ ନେଇ ପ୍ରାଣୀ ଜଗତର ସର୍ବାଧିକ ଭାଗ ଗଠିତ । ଦଶଲକ୍ଷରୁ ଅଧିକ ଜାତିର କୀଟପତଙ୍ଗ ପୃଥିବୀରେ ଅଛନ୍ତି ଓ ଆହୁରି ଅନେକ ଆବିଷ୍କୃତ ହେବାର ସମ୍ଭାବନା ରହିଛି । କୀଟ ବା ଇଂରାଜୀରେ 'ଇନ୍‌ସେକ୍ଟ' ଶବ୍ଦଟି ଲାଟିନ୍ ଶବ୍ଦ 'ଇନ୍‌ସେକ୍ଟମ୍' ଅର୍ଥାତ କଟା ହୋଇଥିବାର ବସ୍ତୁ ବୋଲି ବୁଝାଏ । ଏହାର କାରଣ, କୀଟର ଦେହ ପୃଥକ ତିନି ଭାଗରେ ବିଭକ୍ତ ଯଥା- ମୁଣ୍ଡ, ଛାତି ଓ ପେଟ ।

ଦୀର୍ଘ 35 କୋଟି ବର୍ଷ ଧରି ପୃଥିବୀରେ କୀଟମାନେ ଅଛନ୍ତି । ଅତି ବିସ୍ମୟଜନକ ଭାବରେ ଏମାନଙ୍କ ସଂଖ୍ୟା, ରୂପ, ସ୍ୱଭାବ ତଥା ମନୋମୁଗ୍ଧକର ବାତାବରଣକୁ ଖାପଖୁଆଇ ବଞ୍ଚିଭାଗିବି ଶକ୍ତି ଏମାନଙ୍କର ଅଛି । ତପ୍ତ ଝରଣା ଓ ମରୁଅଞ୍ଚଳ, ଯେଉଁଠାରେ ଦିନର ତାପମାତ୍ରା 70° ସେଣ୍ଟିଗ୍ରେଡ୍ ହୁଏ, ସେଠାରେ ମଧ କେତେ ଜାତିର କୀଟ ବାସ କରିପାରନ୍ତି । ଅନ୍ୟମାନେ ଅତ୍ୟଧିକ ଥଣ୍ଡାରେ ମଧ ରହିପାରନ୍ତି । ଏପରିକି ପ୍ରବଳ ବିଷ ମଧ ସହ୍ୟ କରିପାରନ୍ତି । ପୃଥିବୀ ସାରା ବିଭିନ୍ନ ବାତାବରଣରେ ସେମାନଙ୍କର ଉପସ୍ଥିତି ଓ ପ୍ରାବଲ୍ୟ ବିଷୟରେ ବିଚାର କଲେ ଏମାନଙ୍କୁ ପ୍ରାଣୀଜଗତର ସର୍ବାଧିକ ସଫଳକାମ ଜୀବ ବୋଲି କୁହାଯିବ ।

ଭାରତରେ 50,000ରୁ ଅଧିକ ଜାତିର କୀଟପତଙ୍ଗଙ୍କୁ ନେଇ ଏମାନଙ୍କର ଭିନ୍ନତାରେ ଆମେ ବିରଣାବୀ । ପ୍ରତିକୂଳ ବାତାବରଣରେ କୀଟପତଙ୍ଗମାନେ ଖାପଖୁଆଇ ବଞ୍ଚିପାରୁଥିଲେ ମଧ ପ୍ରଦୂଷଣ, ବିଶେଷ କରି କୀଟନାଶକ ଔଷଧର ଅବାଧ ବ୍ୟବହାର ଓ ସେମାନଙ୍କର ବାସସ୍ଥଳୀ ଧ୍ୱଂସ ପାଇବା ଯୋଗୁଁ ସେମାନେ ବିପନ୍ନ ହୋଇ ପାରନ୍ତି । ଏବେ ଅନେକ ଜାତିର କୀଟପତଙ୍ଗ ଅରକ୍ଷିତ ବିବେଚିତ ହୋଇଛନ୍ତି ଓ ସେମାନଙ୍କୁ ବନ୍ୟପ୍ରାଣୀ ସଂରକ୍ଷଣ ଆଇନ୍ ଅନ୍ତର୍ଗତ ସଂରକ୍ଷିତ ପ୍ରାଣୀ ତାଲିକାର ଅନ୍ତର୍ଭୁକ୍ତ କରାଯାଇଛି । ତଥାପି ଏ ବିଷୟରେ ଆମର ଯଥେଷ୍ଟ ଜ୍ଞାନ ନାହିଁ । ତନ୍ମଧ୍ୟରୁ କେତେକଙ୍କ ବିଷୟରେ ନିମ୍ନରେ ଦିଆଗଲା ।

### ଲେପିଡ଼ୋଟେରା

ପ୍ରଜାପତି ଓ ମଥ୍ ମାନଙ୍କଭଳି କେତେକ ମନୋମୁଗ୍ଧକର ରଙ୍ଗବେରଙ୍ଗ ପତଙ୍ଗ ଜାତୀୟ ଜୀବ "ଲେପିଡ଼ୋଟେରା" ଶ୍ରେଣୀର ଅନ୍ତର୍ଗତ । ଅନେକ ପ୍ରଜାପତିଙ୍କ ଡେଣାର ଚମତ୍କାର ରଙ୍ଗ, ସେମାନଙ୍କ ଡେଣା ସାରା ଅସଂଖ୍ୟ କାତିରେ ଖଚିତ ରଙ୍ଗୀନ୍ ରେଣୁଗୁଡ଼ିକ ଯୋଗୁଁ ସମ୍ଭବପର ହୋଇଥାଏ । ବସ୍ତୁତଃ ଗ୍ରୀକ୍‌ଶବ୍ଦ 'ଲେପିସ' (Lepis) ଅର୍ଥାତ୍ କାତି ଓ 'ଟେରା' (Ptera) ଅର୍ଥାତ୍ 'ଡେଣା' ଏ ଦୁଇ ଶବ୍ଦର ସମାହାରରୁ 'ଲେପିଡ଼ୋଟେରା'' ଶବ୍ଦ ଉଦ୍‌ଭୂତ ହୋଇଛି । ଅଣୁବୀକ୍ଷଣ ଯନ୍ତ୍ରରେ ପ୍ରଜାପତିର ଡେଣାକୁ ପରୀକ୍ଷା କଲେ ତହିଁରେ କାତିଗୁଡ଼ିକ ଟାଇଲ ଛାତର ଥାକଥାକ ଟାଇଲ ସଜା ହୋଇ ରହିଲା ଭଳି ଦେଖାଯାଏ । ପ୍ରଜାପତିର ଡେଣା ଧରିଲାବେଳେ ତହିଁରେ ଥିବା କାତିଗୁଡ଼ିକ ଧୂଳିପରି ଆଙ୍ଗୁଠି ଅଗରେ ଲାଗିଯାଏ ।

ଭାରତରେ ଦେଖାଯାଉଥିବା 'ଲେପିଡ଼ୋପ୍ଟେରା'ଶ୍ରେଣୀ ବିନ୍ୟାସ ଅନ୍ତର୍ଗତ ଅନେକ ଜାତିର ପତଙ୍ଗ ଏବେ କୀଟନାଶକ ଔଷଧର ବହୁଳ ବ୍ୟବହାର ଓ ବାସସ୍ଥଳୀର ବିନାଶ ତଥା ପ୍ରଦୂଷଣ ଯୋଗୁଁ ଦୁଷ୍ପ୍ରାପ୍ୟ ଓ ବିପଦଗ୍ରସ୍ତ ହୋଇପଡ଼ିଛନ୍ତି । ସୁରକ୍ଷିତ 'ଲେପିଡ଼ୋପ୍ଟେରା'ମାନଙ୍କ ମଧ୍ୟରୁ କେତେ ଜାତିର ପତଙ୍ଗ ହେଉଛନ୍ତି, ଗାରିଗାରିକା ପ୍ରଜାପତି, ନୀଳଫୁଲିଆ ପ୍ରଜାପତି, ମୟୂର ଚନ୍ଦ୍ରିକା ପ୍ରଜାପତି, କେତେ ଜାତିର ସମ୍ରାଟ ପ୍ରଜାପତି, ମାଲାବାର ଟାଡକ ଲାଞ୍ଜିଆ ଗାରିଗାରିକା ପ୍ରଜାପତି, ସାଧାରଣ ଚିଡ଼ିଆ ଲାଞ୍ଜ ପ୍ରଜାପତି, କୋବି ପ୍ରଜାପତି, ବାଇଗଣି ବାଦାମୀ ରୁମିଆ ପ୍ରଜାପତି ଏବଂ ଆହୁରି ଶହଶହ ପ୍ରଜାପତି ।

### ଓଡ଼ୋନାଟା

କଙ୍କି ଓ ଗଣଗଣିଆ ମାଛି ଓଡ଼ୋନାଟା ଶ୍ରେଣୀର ଅନ୍ତର୍ଭୁକ୍ତ । ବହୁ କୋଠରୀ ବିଶିଷ୍ଟ ବଡ଼ ଆଖିଥିବା ବଡ଼ମୁଣ୍ଡ, କାମୁଡ଼ିବା ପାଇଁ ପାଟିର ଅଙ୍ଗ, ଜାଲକ ଶିରା ବହୁଳ ସ୍ୱଚ୍ଛ ଡେଣା ଓ ଲମ୍ବା ଦେହ ଆଦି ଏହି ଉଗ୍ରଜୀବି କୀଟମାନଙ୍କର ଚରିତ୍ର । ଏମାନଙ୍କର ଲାର୍ଭା ଜଳାଶୟୀ । କେତେକ କଙ୍କିଙ୍କ ପ୍ରସ୍ତରୀଭୂତ ଜୀବାଶ୍ମ ଖୁବ୍ ବଡ଼ ଥିଲା ।

ଦାର୍ଜିଲିଂ ପାଖାପାଖି କେତେକ ଅଞ୍ଚଳରେ ବଡ଼ହିମାଳୟ କଙ୍କି ଭାରତରେ ଦେଖାଯାଉଥିବା ଏହି ଓଡ଼ୋନାଟା ଶ୍ରେଣୀୟ ବିପନ୍ନ କଙ୍କି ।

### କୋଲେଓପ୍ଟେରା

ଭଅଁର ପୋକମାନେ ଏହି କୋଲେଓପ୍ଟେରା ଶ୍ରେଣୀ ବିନ୍ୟାସର । ଦ୍ରୁତଗତି ସମ୍ପନ୍ନ ଏହି କଳାରଙ୍ଗର ପୋକ ଅନେକ ଲୋକଙ୍କ ଲାଗି ଶଙ୍କା ଓ ବିରକ୍ତିର କାରଣ ହୋଇଥାଏ । ଇଂଲଣ୍ଡରେ ବସବାସ କରୁଥିବା ଆଙ୍ଗ୍ଲୋସ୍ୟାକ୍ସନ୍ ଜାତୀୟ ଲୋକ ମାନଙ୍କ ଭାଷାରେ 'ବିଟଲ' ଶବ୍ଦର ଅର୍ଥ ହେଉଛି "କାମୁଡୁଥିବା ଜୀବ" । ତେଣୁ ଏଭଳି ନାମକରଣ ପୋକରୁ ହାବଭାବ ବିଷୟରେ ସୂଚନା ଦିଏ । ଭଅଁରମାନେ ଠିକ୍ ସାଙ୍ଗୁ ପିଣ୍ଡା ପୋକ ମାନଙ୍କ ଭଳି । କେତେକ ବିକୃତକାୟ ଦିଶନ୍ତି ଓ ଅନ୍ୟମାନେ ଚକଚକିଆ ରଙ୍ଗର ହୋଇ ସୁନ୍ଦର ଦେଖାଯାଆନ୍ତି ।

ମାଉପୋକ, ମାଉଭଅଁର ଓ ଜୁଳୁଜୁଳିଆ ପୋକ ମାନଙ୍କ ପରି କେତେକ ପତଙ୍ଗମାନଙ୍କୁ ଦେଖି ଲୋକେ ଆନନ୍ଦିତ ହୁଅନ୍ତି । ପ୍ରାକ୍ କାଳୀନ ଇଜିପ୍ଟର ଲୋକେ ସ୍କାରାବ ଜାତିର ଏକ ପ୍ରକାର ଭଅଁର ବା ସ୍କାରାବାକସ୍ ଜାତିର ପତଙ୍ଗ ମାନଙ୍କୁ ନିତ୍ୟ ବା ଅନନ୍ତ ଜୀବନର ସଂକେତ ଭାବରେ ପୂଜା କରୁଥିଲେ ।

କେତେକ ଜାତିର ପତଙ୍ଗ ମାନବସମାଜ ଲାଗି ଅତ୍ୟନ୍ତ ପ୍ରୟୋଜନୀୟ । କାରଣ ସେମାନେ ମହାମାରୀସୃଜକ କୀଟମାନଙ୍କୁ ଖାଇ ଯାଆନ୍ତି । ଅନ୍ୟ ଭଅଁରମାନେ ଆବର୍ଜନା ସଫାକାରୀ ପ୍ରକୃତିର । ସେମାନେ ଛୋଟଛୋଟ ମୃତଜୀବମାନଙ୍କୁ ପୋତି ଦେବାରେ, ଆବର୍ଜନା ସଫା

କରିବାରେ ଓ ମାଟିକୁ ସୁନ୍ଦର କରିବାରେ ସାହାଯ୍ୟ କରନ୍ତି । ମାତ୍ର ଆହୁରି ହଜାର ହଜାର କିସମର ପତଙ୍ଗ ଅଛନ୍ତି, ଯେଉଁମାନେ ଗଛ, ଫସଲ, ଖାଦ୍ୟ, ଲୁଗାପଟା ଓ ଆସବାବପତ୍ର ନଷ୍ଟ କରି ଦିଅନ୍ତି । ପୁଣି କେତେ ଜାତିର ପତଙ୍ଗ ମାନବ ସମାଜ ପକ୍ଷରେ ପରାନ୍ନଭୋଜି ପ୍ରକୃତିର । ତନ୍ମଧ୍ୟରୁ କେତେକ ମୂଷାମାନଙ୍କ ଦେହରେ ଓ ଅନ୍ୟ କେତେକ ମଣିଷ ଦେହରେ ଫିତାକୃମି ସଂକ୍ରମିତ କରାନ୍ତି ।

''କାର୍ବିଡ଼େ'' (Carbidae) ଶ୍ରେଣୀର କେତେ ଜାତିର ପତଙ୍ଗ, ଯଥା-ଆରୋନୋଟ୍ରେକସ୍ ଆଣ୍ଡ୍ରିଓ୍ୱେସି, ଆମାରା ଏଲେଗାନ୍ ଫୁଲା, ଆମାରାବ୍ରେସି, ବ୍ରୋସ୍କୋସୋମା ଗ୍ରାସାଇଲ୍, କେନିଅସ କାରାନେ ଓ କାଲାଥସ୍ ଆମାରଏଡ୍ସ ଆଦି ଭାରତରେ ଦୁଷ୍ପ୍ରାପ୍ୟ ହୋଇଗଲାଣି । ବିପନ୍ନ ଅମେରୁଦଣ୍ଡୀ ପ୍ରାଣୀମାନଙ୍କ ବିଷୟରେ ସମ୍ୟକ ଧାରଣା ଦେବା ଲାଗି ଓ ଆହୁରି ଅନେକ ନିମ୍ନମାନର ଜୀବଙ୍କର ସଂରକ୍ଷଣ ସ୍ଥିତି ସମ୍ପର୍କରେ ଖୁବ୍ ବେଶି ସୂଚନା ମିଳିନାହିଁ ।



## ସଂରକ୍ଷଣ ପ୍ରଚେଷ୍ଟା

ଏହା ସତ୍ୟ ହେଲେ ମଧ୍ୟ ଅସମ୍ଭବ ଭଳି ମନେ ହୁଏ ଯେ, ଅଶୋକ, ଗୌତମ ବୁଦ୍ଧ ଓ ମହାତ୍ମା ଗାନ୍ଧୀଙ୍କ ଦେଶ ଭାରତବର୍ଷ ସମସ୍ତ ଜୀବଜଗତ ପ୍ରତି ପ୍ରେମ, ସମ୍ମାନ ଓ ଶ୍ରଦ୍ଧାର ପୁରାତନ ସଂସ୍କୃତି-ସମ୍ପନ୍ନ ହୋଇଥିବା ସତ୍ତ୍ୱେ ଆମର ଏତେପ୍ରକାର ଅନନ୍ୟ ବା ଅସାଧାରଣ ଜୀବଜନ୍ତୁ ସେମାନଙ୍କ ଜୀବନରକ୍ଷା ନେଇ ଭୀତତ୍ରସ୍ତ ହୋଇ ରହିଛନ୍ତି । ଆମ ପୂର୍ବପୁରୁଷ ମାନଙ୍କର ଦୈନନ୍ଦିନ ଜୀବନରେ ବନ୍ୟପ୍ରାଣୀଙ୍କ ସୁରକ୍ଷାବିଷୟକ ନିତ୍ଯକ ସତ୍ୟ, ଯାହକି ଆମର ପୁରାଣ, ଲୋକକଥା, ଧର୍ମ, କଳା ଓ ସଂସ୍କୃତିରେ ଜଡ଼ିତ ବା ଖଚିତ ହୋଇ ରହିଛି, ସେସବୁର ମୂଳଭିତ୍ତି ଆମେ ହରାଇ ବସିଲୁଣି କି ? ସମ୍ରାଟ ଅଶୋକଙ୍କ ଦ୍ୱାରା ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଖୋଦିତ ଶିଳାଲିପି ପ୍ରାଚୀନତମ ବନ୍ୟପ୍ରାଣୀ ସଂରକ୍ଷଣ ଆଇନ ବିଷୟରେ ସୂଚନା ଦିଏ । ଭାରତୀୟ କଳା, ସ୍ଥାପତ୍ୟ, ଚିତ୍ରକଳା ଓ ଶିଳାଲିପି ମାନଙ୍କରେ ବନ୍ୟପ୍ରାଣୀ ମାନଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଯାହାକି କେତେକ ଚମତ୍କାର ପ୍ରତିମା ବା ମୂର୍ତ୍ତି ମାନଙ୍କରେ ପ୍ରତିଫଳିତ ହୋଇଛି; ପଞ୍ଚତନ୍ତ୍ର ବା ହିତୋପଦେଶ ଭଳି ପ୍ରାକ୍‌କାଳୀନ ସାହିତ୍ୟରୁ ପଶୁମାନଙ୍କ ସମ୍ବନ୍ଧୀୟ କଥାଗୁଡ଼ିକ ଯାହାକି ବହୁ ଶତାବ୍ଦୀ ପୂର୍ବେ ଥିଲା, ତଦ୍‌ପେକ୍ଷା ଆଜି ଆହୁରି ଅଧିକ ସମୟୋପଯୋଗୀ ହୋଇପଡ଼ିଛି ।

ଏକ ଅତି ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଆବଶ୍ୟକତା ମେଣ୍ଟାଇବା ପାଇଁ ଗଚ୍ଛିତ ପ୍ରାକୃତିକ ବିଭବକୁ ଦରକାରଠାରୁ ଆହୁରି ଅଧିକ ମାତ୍ରାରେ ବ୍ୟବହାର କରିବା ହେଉଛି ଆଜି ବନ୍ୟପ୍ରାଣୀଙ୍କ ସଂଖ୍ୟା ହ୍ରାସ ପାଇବାର ମୁଖ୍ୟ କାରଣ । ବନ୍ୟପ୍ରାଣୀଙ୍କ ବାସସ୍ଥଳୀ ଧ୍ୱଂସ ପାଇବା, ସେମାନଙ୍କ ଜୀବନ ପ୍ରତି ଅତି ସାଂଘାତିକ ବିପଦ ସୃଷ୍ଟି କରିଛି । ଯଦି ଏସବୁକୁ କୌଣସି ମତେ ଉପେକ୍ଷାକୃତ ବୋଲି କୁହାନଯିବ ତେବେ ଦ୍ୱିତୀୟ କ୍ଷୟକାରୀ ବିଷୟ ହେଉଛି ଶିକାର ଓ ବ୍ୟାବସାୟିକ ଦୃଷ୍ଟିରୁ ବନ୍ୟପ୍ରାଣୀମାନଙ୍କର ଉପଯୋଗ, ଯାହାକି ମାନବିକ ଆବଶ୍ୟକତା ନହୋଇ ମଧ୍ୟ କେବଳ ଲୋଭ ଉପରେ ଆଧାରିତ ବୋଲି କୁହାଯିବ ।

# ଜାତୀୟ ଉଦ୍ୟାନ ଓ ଅଭୟାରଣ୍ୟ

ଆଜି ଭାରତର ବିଭିନ୍ନ ଅଞ୍ଚଳରେ ଦେଶର ସମୁଦାୟ ଭୂଭାଗର ଶତକଡ଼ା ଚାରିଭାଗକୁ ନେଇ 69 ଟି ଜାତୀୟ ଉଦ୍ୟାନ ଓ 392ଟି ଅଭୟାରଣ୍ୟର ବିସ୍ତୃତ ଜାଲକ ସୃଷ୍ଟି ହୋଇପାରିଛି । ବର୍ଷ ବର୍ଷର ବିଜ୍ଞାନାନୁମୋଦିତ ପରିଚାଳନା ଓ ସୁରକ୍ଷା ଦ୍ୱାରା ବହୁଜାତିର ଜୀବଙ୍କୁ ବିଲୁପ୍ତି ମୁଖରୁ ଉଦ୍ଧାର କରାଯାଇ ପାରିଛି । କେବଳ ଯେ କେତେ ସ୍ୱତନ୍ତ୍ର ଜାତିର ପ୍ରାଣୀଙ୍କୁ ରକ୍ଷା କରାଯାଇଛି, ତାହାନୁହେଁ, ସେମାନଙ୍କର ବାସସ୍ଥଳୀ ତଥା ସମଗ୍ର ପ୍ରାକୃତିକ ପରିବେଶକୁ ସୁସ୍ଥ ଓ ପୁନର୍ଜୀବିତ ମଧ୍ୟ କରାଯାଇ ପାରିଛି ।

ଆମ ଦେଶର ପ୍ରାଣୀସମ୍ପଦ ମଧ୍ୟରୁ କେତେକ ଅତି ମୂଲ୍ୟବାନ ପ୍ରାଣୀଙ୍କୁ ଜାତୀୟ ଉଦ୍ୟାନ ଓ ଅଭୟାରଣ୍ୟ ମାନଙ୍କରେ ରଖାଯାଇଛି । କାଶ୍ମୀରର ଦାଚିଗାଁ ଜାତୀୟ ଉଦ୍ୟାନ ହେଉଛି କାଶ୍ମୀର ହରିଣ ମାନଙ୍କ ଶେଷ ଆଶ୍ରୟ ସ୍ଥଳୀ । ବିଶେଷ ଭାବରେ ବିପନ୍ନ ହୋଇପଡ଼ିଥିବା ଅନ୍ୟତମ ହରିଣ କସ୍ତୁରୀମୃଗ ଙ୍କୁ ମଧ୍ୟ ଏହି ଉଦ୍ୟାନରେ ଦେଖିବାକୁ ମିଳେ । ପରେ ସଂରକ୍ଷଣବାଦୀ ହୋଇପଡ଼ିଥିବା ପ୍ରଖ୍ୟାତ ଶିକାରୀ 'ଜିମ୍ କରବେଟ୍'ଙ୍କ ନାମାନୁସାରେ ନାମିତ 'କରବେଟ୍ ଜାତୀୟ ଉଦ୍ୟାନ୍' ହିମାଳୟର ପାଦ ଦେଶରେ ଅବସ୍ଥିତ । ଏହି ଉଦ୍ୟାନ 1936 ମସିହାରେ ସ୍ଥାପିତ ହୋଇଥିଲା । ଏହା ଦେଶର ପ୍ରାଚୀନତମ ଜାତୀୟ ଉଦ୍ୟାନ, ଯହିଁରେ ବାଘ, ହାତୀ, ଚିତାବାଘ ଓ ଅନେକ ଜାତିର ହରିଣ ଆଶ୍ରୟ ନେଉଛନ୍ତି । ଦୁଧ୍ୱା ଜାତୀୟ ଉଦ୍ୟାନ ମଧ୍ୟ ସେହି ଅଞ୍ଚଳରେ ଅବସ୍ଥିତ । ଏହା ସନ୍ତସନ୍ତିଆ ଅଞ୍ଚଳର ମୃଗ, ବାଘ ଓ ବାଲିହରିଣ ମାନଙ୍କ ଲାଗି ବିଖ୍ୟାତ । ମଧ୍ୟପ୍ରଦେଶର କାହ୍ନା ଜାତୀୟ ଉଦ୍ୟାନ ବାଘ ଓ ସନ୍ତସନ୍ତିଆ ଅଞ୍ଚଳର ମୃଗମାନଙ୍କ ଲାଗି ଖ୍ୟାତିଲାଭ କରିଛି ।

ଭାରତର ଦକ୍ଷିଣାଞ୍ଚଳ ରାଜ୍ୟମାନଙ୍କରେ ଥିବା ଅନେକ ଜାତୀୟ ଉଦ୍ୟାନ ଏ ଦେଶର ବହୁ ବୃକ୍ଷଲତା ଓ ଜୀବଜନ୍ତୁଙ୍କ ଲାଗି ପ୍ରାକୃତିକ ଆଶ୍ରୟସ୍ଥଳୀ ହୋଇପଡ଼ିଛି । କର୍ଣ୍ଣାଟକ ରାଜ୍ୟର ବନ୍ଦୀପୁର ଜାତୀୟ ଉଦ୍ୟାନକୁ ଲାଗି ରହିଥିବା ତାମିଲନାଡ଼ୁର ମୁଦୁମଲାଇ ଅଭୟାରଣ୍ୟ, ଉତ୍ତରରେ ନଗରହୋଲ୍ ଜାତୀୟ ଉଦ୍ୟାନ ଓ ପଶ୍ଚିମରେ କେରଳର ୱେନାଡ୍ ଅଭୟାରଣ୍ୟ ଦ୍ୱାରା ଘେରି ହୋଇ ରହିଥିବା ଯୋଗୁଁ ହାତୀମାନଙ୍କ ଚଳାଚଳ ପାଇଁ ଲମ୍ବା ଚଲାପଥ ଓ ଏକହଜାର ବର୍ଗ କିଲୋମିଟରରୁ ଅଧିକ ବିସ୍ତୃତ ଅଞ୍ଚଳରେ ହାତୀମାନଙ୍କ ପାଇଁ ବିଶାଳତମ ବାସସ୍ଥଳୀ ଯୋଗାଇ ଦେଉଛି । ହାତୀମାନଙ୍କ ଛଡ଼ା ଏସବୁ ଅଞ୍ଚଳରେ ଅନ୍ୟ ଯେଉଁ ପ୍ରାଣୀମାନଙ୍କୁ ଦେଖିହେବ ସେମାନେ ହେଲେ, ବାର୍ହା, ଚିତାବାଘ, ଗୁରାଣ୍ଡି, ମୃଗ, ଦେଶୀଭାଲୁ ଓ ଛୋଟ ଚିତାବିରାଡ଼ି ଜାତୀୟ ଜୀବ ଯେପରିକି କଟାସ, ଶାଳିଆ ପତନି, ଓ ଢ଼ାଳି ଓଧ ଆଦି ବନ୍ୟ ପଶୁ । କେରଳର ପେରିୟାର ଅଭୟାରଣ୍ୟ ହେଉଛି ହାତୀ, ବାଘ ଓ ଅନ୍ୟ ଜୀବଜନ୍ତୁଙ୍କ ଲାଗି ଏକ ସୁରକ୍ଷିତ ସ୍ଥାନ ।

ଭରତପୁରର କେଓଲାଦେଓ ଜାତୀୟଉଦ୍ୟାନ ପକ୍ଷୀମାନଙ୍କ ଅଭୟାରଣ୍ୟ ଭାବରେ ସମଗ୍ର ଏସିଆ ମହାଦେଶରେ ଖ୍ୟାତିଲାଭ କରିଛି । ଉଭୟ ଯାଯାବର ଓ ସ୍ଥାୟୀ ଭାବରେ ବସବାସ

କରୁଥିବା ଶହଶହ ବିଭିନ୍ନ କିସମର ପକ୍ଷୀ ଏହି ଅଭୟାରଣ୍ୟରେ ଭରି ରହିଛନ୍ତି । ପ୍ରତିବର୍ଷ ଅକ୍ଟୋବର ମାସରୁ ଡିସେମ୍ବର ପର୍ଯ୍ୟନ୍ତ ସ୍ଥାନୀୟ ଜଳଚର ପକ୍ଷୀ-ଚିତ୍ରିଆ ଗେଣ୍ଡାଳିଆ, ଗେଣ୍ଡାଳିଆ, ଚାମୁଚ ଥଣ୍ଟିଆ ଗେଣ୍ଡାଳିଆ, ଧଳା ବାଜେଣି, ବଡ଼ ପାଣିକୁଆ, ପାଣିକୁଆ, ବଗ ଓ କାଣ୍ଡିବଗ ଆଦି ବିସ୍ତୀର୍ଣ୍ଣ ଅଗଭୀର ପାଣି ଜୋରରେ ଥିବା ବାବୁଲ ଜାତୀୟ ଗଛରେ ବସା ବାନ୍ଧନ୍ତି । ଡିସେମ୍ବର ମାସରେ ଶୀତକାଳୀନ ଅତିଥିମାନେ ପହଞ୍ଚିଯାଆନ୍ତି । ସେମାନଙ୍କ ମଧ୍ୟରେ ସାଇବେରିଆର ବଗ ହେଉଛି ଏକ ଦୁଷ୍ପ୍ରାପ୍ୟ ପକ୍ଷୀ, ଯେଉଁମାନଙ୍କ ମଧ୍ୟରୁ ପୃଥିବୀରେ ଏବେ ପ୍ରାୟ 400ଟି ମାତ୍ର ବଞ୍ଚି ରହିଛନ୍ତି । ପ୍ରେମର ପୂର୍ବରାଗ ନୃତ୍ୟ ଲାଗି ବିଖ୍ୟାତ ସାରସ ବଗ ଏଠାରେ ହେଉଛି ଦେଶର ଏକ ଦର୍ଶନୀୟ ବାସିନ୍ଦା ।

ରାଜସ୍ଥାନର ଥର୍ ମରୁଭୂମିର 3000 ବର୍ଗକିଲୋମିଟର ବ୍ୟାପୀ ଜାତୀୟ ମରୁଦ୍ୟାନ ହେଉଛି ମରୁ ଗାମଣ୍ଡିଆଳ, ମରୁବିରାଡ଼ି ଓ ମରୁକୋକିଶିଆଳିଙ୍କର ଆଶ୍ରୟସ୍ଥଳୀ । ଏହାଛଡ଼ା ଏଠାରେ ବାସ କରୁଥିବା ଭାରତୀୟ ବୃହତ ବଷ୍ଟାର୍ଡ଼ମାନେ ଏବେ ଅତ୍ୟଧିକ ବିପନ୍ନ ହୋଇପଡ଼ିଛନ୍ତି । କେବଳ ଭାରତବର୍ଷ କାହିଁକି, ସମଗ୍ର ଏସିଆ ମହାଦେଶରେ ଗୁଜରାଟର ଗିର୍ ଅଭୟାରଣ୍ୟ ହେଉଛି ସିଂହମାନଙ୍କର ଏକମାତ୍ର ଭୂସ୍ୱର୍ଗ । ସିଂହମାନଙ୍କ ବ୍ୟତୀତ ଗିର୍ ଜାତୀୟ ଉଦ୍ୟାନ ହେଉଛି ଚିତାବାଘ, ମୃଗ, ଚଉଶିଙ୍ଗା, ସମ୍ବର, ନୀଳଗାଈ, ଶିକାରା ଓ ହେଟାବାଘମାନଙ୍କର ଆଶ୍ରୟ ସ୍ଥଳୀ ।

ଆସାମର ବ୍ରହ୍ମପୁତ୍ର ନଦୀତୀରସ୍ଥ କାଜିରଙ୍ଗା ଜାତୀୟ ଉଦ୍ୟାନରେ ଗଣ୍ଡା, ଅରଣା ମଇଁଷି ଓ ଅନ୍ୟଜାତିର ବନ୍ୟପ୍ରାଣୀମାନଙ୍କ ଲାଗି ଅଭୟାରଣ୍ୟର ବ୍ୟବସ୍ଥା ହୋଇଛି । ଭୂଟାନର ନିରବଚ୍ଛିନ୍ନ ଜଙ୍ଗଲ ସହିତ ଆସାମର ମାନସ ସଂରକ୍ଷୀତ ଅରଣ୍ୟର ବୈଶିଷ୍ଟ୍ୟ ହେଉଛିଯେ, ଏଠାରେ ଦେଖାଯାଉଥିବା ଭାରତର ସବୁଠାରୁ ବିପନ୍ନ ବହୁଜାତିର ପଶୁପକ୍ଷୀ ଅଛନ୍ତି । ହାତୀ, ଗଣ୍ଡା, ଅରଣାମଇଁଷି, ଗୟଳ, ସନ୍ତସନ୍ତିଆ ଅଞ୍ଚଳର ମୃଗ, ବାମନ ଘୁଷୁରୀ, କ୍ଷିପ୍ରଗାମି ଠେକୁଆ, ଭାରତୀୟ ବଣମଣିଷ, ସୁବର୍ଣ୍ଣ ହନୁମାଙ୍କଡ଼, ବେଙ୍ଗରା ମୂଷା, ବିରାଡ଼ିଭାଲୁ, ଘଡ଼ିଆଳ, ଅଜଗର ଓ ରାଜକୋଚିଲାଖାଇ ଆଦି ଏଠାରେ ଦେଖିବାକୁ ମିଳନ୍ତି । ଅରୁଣାଚଳ ପ୍ରଦେଶର ନାମ୍‌ଦାଫା ଅଭୟାରଣ୍ୟ ହେଉଛି ମହାବଳ ବାଘ ଦେଖାଯାଉଥିବା ଅଞ୍ଚଳର ପୂର୍ବ ସୀମା । ଗୟଳ, ଅରଣାମଇଁଷି, ଗୋରାଲ୍ ଓ ଟାକିନ୍ ମାନେ ମଧ୍ୟ ଏଠାରେ ଦେଖାଯାଆନ୍ତି ।

ପଶ୍ଚିମବଙ୍ଗର ସୁନ୍ଦରବନ ଜାତୀୟ ଉଦ୍ୟାନଟି ଗଙ୍ଗା ଓ ବ୍ରହ୍ମପୁତ୍ର ନଦୀ ଦୁଇଟିର ବଙ୍ଗୋପସାଗର ସହିତ ସଙ୍ଗମ ସ୍ଥଳରେ ଗଠିତ ତ୍ରିକୋଣ ଭୂମି ଉପରେ 2585ବର୍ଗକିଲୋମିଟର ଆୟତନର ଭୂମି ଉପରେ ଅବସ୍ଥିତ । ଏହି ବିଶାଳ ସଂରକ୍ଷଣସ୍ଥଳୀଟି ଲୁଣା ଜଙ୍ଗଲ ପାରିବେଶିକ ଅବସ୍ଥାର ଉପସ୍ଥାପକ । ସୁନ୍ଦର ବନର ବାଘ ହେଉଛି ଏହି ଅଞ୍ଚଳର ଅନନ୍ୟ ସାଧାରଣ ସ୍ତନ୍ୟପାୟୀ ପ୍ରାଣୀ । ବାଘମାନଙ୍କ ମଧ୍ୟରେ ଅତି ଚମତ୍କାର ଜାତିର ବାଘ ହେଉଛି ରାଜକୀୟ ବଙ୍ଗୀୟ ମହାବଳ ବାଘ, ଯିଏକି ଏଠାକାର ଅତିରିକ୍ତ ଲୁଣି ଜଳବାୟୁରେ ଉଭୟଚର ଜୀବନ ବିତାଇବାରେ ଅଭ୍ୟସ୍ତ ।

## ଜୈବ ମଣ୍ଡଳୀୟ ସଂରକ୍ଷଣ

ଜାତିସଂଘର ଶିକ୍ଷା, ବିଜ୍ଞାନ ଓ ସଂସ୍କୃତି ସଙ୍ଗଠନ (ୟୁନେସ୍କୋ) ପରିକଳ୍ପିତ ମାନବ ଓ ଜୈବମଣ୍ଡଳୀୟ କାର୍ଯ୍ୟକ୍ରମ ହେଉଛି ନାନା ପ୍ରକାର ପାରିବେଶିକ ବ୍ୟସ୍ଥାରେ ଥିବା ବିଭିନ୍ନତାକୁ ପ୍ରଦର୍ଶିତ ବା ଉପସ୍ଥାପନ କରୁଥିବା ଅଞ୍ଚଳର ସଂରକ୍ଷଣ ବ୍ୟବସ୍ଥା । ଜୈବମଣ୍ଡଳ ସଂରକ୍ଷଣର ମୁଖ୍ୟ ଉଦ୍ଦେଶ୍ୟ ହେଉଛି :

(1) ଉଦ୍ଭିଦ, ପ୍ରାଣୀ ଓ ଜୀବାଣୁ ମଧ୍ୟରେ ଥିବା ସମନ୍ୱୟ ଓ ଭିନ୍ନତାର ସଂରକ୍ଷଣ ।

(2) ପରିବେଶ ସଂରକ୍ଷଣ ଓ ଅନ୍ୟ ପାରିପାର୍ଶ୍ୱିକ ସ୍ଥିତି ଉପରେ ଗବେଷଣା ଲାଗି ଉତ୍ସାହିତ କରିବା ।

(3) ଏ ଦିଗରେ ଶିକ୍ଷା, ଜ୍ଞାନ ଓ ତାଲିମ ଲାଗି ସୁବିଧା ଦେବା ।

ଭାରତରେ ଜୈବମଣ୍ଡଳୀୟ ସଂରକ୍ଷଣ ଲାଗି ପାରିବେଶିକ ବ୍ୟବସ୍ଥା ଉପସ୍ଥାପିତ କରୁଥିବା 14ଟି ଅଞ୍ଚଳ ଏବେ ଚିହ୍ନିତ କରାଯାଇଛି । ତନ୍ମଧ୍ୟରୁ 7ଟି ସଂରକ୍ଷଣ ସ୍ଥଳୀ ନୀଳଗିରି, ନନ୍ଦା ଦେବୀ, ନୋକ୍ରେକ୍, ବିଶାଳ ନିକୋବାର ଦ୍ୱୀପ, ମାନାର ଉପସାଗର, ମାନସ ଓ ସୁନ୍ଦରବନ ଏଯାବତ୍ ପ୍ରତିଷ୍ଠିତ ହୋଇସାରିଛି । ଅନ୍ୟ ପ୍ରସ୍ତାବିତ ସଂରକ୍ଷଣସ୍ଥଳୀଗୁଡ଼ିକ ହେଉଛି, ନାମ୍‌ଦାଫା, କାହ୍ନା, ଉତ୍ତରାଖଣ୍ଡ, ଥର୍ ମରୁଭୂମି, କାଜିରାଙ୍ଗା, କଚ୍ଛର ଛୋଟରାନ୍ ଓ ଉତ୍ତର ଆଣ୍ଡାମାନ ।

ଜୈବମଣ୍ଡଳୀୟ ସଂରକ୍ଷଣ ଗୁଡ଼ିକ ଉପରୋକ୍ତ ପରିବେଶ ମଧ୍ୟରେ ଥିବା ବହୁ ସଂଖ୍ୟକ ଦୁଷ୍ପ୍ରାପ୍ୟ ଓ ବିପନ୍ନ ଜାତିର ପ୍ରାଣୀମାନଙ୍କୁ ସୁରକ୍ଷା ଦେଇ ପାରିବ ।

## ସ୍ୱତନ୍ତ୍ର ଯୋଜନା

### ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ

ଦେଶରେ ବାଘସଂଖ୍ୟା ଦ୍ରୁତ ଗତିରେ ହ୍ରାସ ପାଉଥିବାରୁ 1970 ମସିହାରେ ଭାରତୀୟ ବନ୍ୟ ପ୍ରାଣୀ ପରିଷଦ ଦ୍ୱାରା ଏ ଦେଶରେ ବାଘମାନଙ୍କ ସୁରକ୍ଷା ଲାଗି ଏକ ସ୍ୱତନ୍ତ୍ର କାର୍ଯ୍ୟକାରୀ ଦଳ ଗଠନ କରାଯାଇଥିଲା । ଏଥିଲାଗି କାର୍ଯ୍ୟ ପରିକଳ୍ପନା ପ୍ରସ୍ତୁତ କରାଯିବା ଫଳରେ 1973 ମସିହା ଏପ୍ରିଲ ପହିଲାଦିନ "ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ" ନିମ୍ନୋକ୍ତ ଲକ୍ଷ୍ୟ ନେଇ ପ୍ରଚଳନ କରାଗଲା ।

(1) ବୈଜ୍ଞାନିକ, ଅର୍ଥନୈତିକ, ରୁଚିଗିରିକ, ସାଂସ୍କୃତିକ ଓ ପାରିବେଶିକ ମୂଲ୍ୟବୋଧ ଦୃଷ୍ଟିରୁ ଭାରତରେ ସମ୍ଭାବ୍ୟ ସଂଖ୍ୟକ ବାଘଙ୍କର ରକ୍ଷଣାବେକ୍ଷଣର ସୁନିଶ୍ଚୟତା ।

(2) ଜନସାଧାରଣଙ୍କ ଶିକ୍ଷା, ଆମୋଦପ୍ରମୋଦ, ତଥା ହିତ ଦୃଷ୍ଟିରୁ ଆମର ଜାତୀୟ ଐତିହ୍ୟ ଅନୁସାରେ ଜୀବପ୍ରାଧାନ୍ୟ ଥିବା ଅଞ୍ଚଳଗୁଡ଼ିକର ସବୁଦିନ ପାଇଁ ସଂରକ୍ଷଣ ପାଇଁ ବ୍ୟବସ୍ଥା ।

1973-74 ମସିହାରେ ନିମ୍ନୋକ୍ତ ନିୟମାବଳୀ ଉପରେ ଭିତ୍ତିକରି ୨ ଗୋଟି ବ୍ୟାଘ୍ର ସଂରକ୍ଷଣ ଯୋଜନା ପ୍ରତିଷ୍ଠା କରାଯାଇଛି । ଯଥା:-

(1) ପ୍ରକଳ୍ପ ଭିତରୁ ସମସ୍ତ ପ୍ରକାର ମାନବିକ ଶୋଷଣ ଓ ବିଶୃଙ୍ଖଳା ଦୂର କରିବା ଏବଂ ଏଭଳି କାର୍ଯ୍ୟକଳାପ ସଂଶ୍ଳିଷ୍ଟ ଥିବା ବିବାଦୀୟ ଅଞ୍ଚଳରେ ଯୁକ୍ତିଯୁକ୍ତ ନିରାକରଣ ବ୍ୟବସ୍ଥା ।

(2) ପରିବେଶକୁ ପ୍ରକୃତିପୁଷ୍ଟ କାର୍ଯ୍ୟକଳାପର ସମକକ୍ଷ କରିବାର ଲକ୍ଷ୍ୟ ନେଇ ମଣିଷକୃତ କ୍ଷୟକ୍ଷତିର ଭରଣା କରିବା ଦିଗରେ ଆବାସିକ ପରିଚାଳନାକୁ ନିୟନ୍ତ୍ରିତ କରିବା ।

(3) ବନ୍ୟପ୍ରାଣୀ ଓ ସେମାନଙ୍କ ବାସସ୍ଥଳୀ ସମ୍ବନ୍ଧୀୟ ତଥ୍ୟାବଳୀ ଉପରେ ଗବେଷଣା କରିବା ଏବଂ ଉଦ୍ଭିଦ ଓ ପ୍ରାଣୀ ମାନଙ୍କର ପରିବର୍ତ୍ତନକୁ ସାବଧାନତାର ସହିତ ଲକ୍ଷ୍ୟ କରିବା ।

ଏବେ 13ଟି ରାଜ୍ୟରେ 24000ବର୍ଗ କିଲୋମିଟର ଅରଣ୍ୟକୁ ନେଇ 18 ଟି ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି ।

ବ୍ୟାଘ୍ର ସଂରକ୍ଷଣ ପ୍ରକଳ୍ପ ହିଁ ବନ୍ୟପ୍ରାଣୀମାନଙ୍କ ସୁରକ୍ଷା ଦିଗରେ ଏ ଦେଶର ସଂକଳ୍ପକୁ ସ୍ଥାପିତ କରେ ଏବଂ ଏହା ଆଜିକାର ବନ୍ୟପ୍ରାଣୀ ସଂରକ୍ଷଣ ସାଫଲ୍ୟ କାହାଣୀ ଉପରେ ସ୍ୱୀକୃତ । ପ୍ରଧାନ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଦିଗଦର୍ଶକ ପରିଚାଳନା ସମିତି ବ୍ୟାଘ୍ର ପ୍ରକଳ୍ପଗୁଡ଼ିକର ପରିଚାଳନା ଦିଗରେ ନିର୍ଦ୍ଦେଶନାମା ଦିଅନ୍ତି। ଏହି ପ୍ରକଳ୍ପଗୁଡ଼ିକ ବାଘର ସବୁପ୍ରକାର ଆବାସିକ ପାରିପାର୍ଶ୍ୱିକ ବ୍ୟବସ୍ଥାର ସୁରକ୍ଷା ଦିଗରେ ନିଶ୍ଚିତ ଭରସା ଦେଇ ପାରିଛି ଓ ବର୍ଷାନୁକ୍ରମେ ସେମାନଙ୍କର ସଂଖ୍ୟା ଦୁଇଗୁଣରୁ ଅଧିକ ହୋଇ ପାରିଛି ।

## ଗୀର୍ ସିଂହ ଅଭୟାରଣ୍ୟ ପ୍ରକଳ୍ପ

ଏକଦା ଭାରତୀୟ ଉପମହାଦେଶର ଉତ୍ତର ଓ କେନ୍ଦ୍ରାଞ୍ଚଳର ବିସ୍ତୀର୍ଣ୍ଣ ଭୂଖଣ୍ଡରେ ବସବାସ କରୁଥିବା ଏସୀୟ ସିଂହ ଏବେ ମାତ୍ର ଗୁଜୁରାଟର ଗୀର୍ ଜଙ୍ଗଲ ମଧ୍ୟରେ ସୀମିତ ଅଛି । ଗୃହପାଳିତ ପଶୁମାନଙ୍କ ଦ୍ୱାରା ମାତ୍ରାଧିକ ଚାରଣ ଭୂମି ଭାବରେ ଗୀର୍ ଜଙ୍ଗଲ ବ୍ୟବହୃତ ହେଉଥିବା ଓ ଶୀକାର ଉପଯୋଗୀ ଜନ୍ତୁ ମାନଙ୍କ ସଂଖ୍ୟା ହ୍ରାସ ପାଇବା ଆଦି ନାନା କାରଣରୁ ପ୍ରାୟ ଦୁଇଶହ ସିଂହଙ୍କର ଏହି ଶେଷ ଆଶ୍ରୟସ୍ଥଳୀଟି ଆତଙ୍କଗ୍ରସ୍ତ ହୋଇ ପଡ଼ିଥିଲା । ଅନାହାର, ରୋଗ ଓ ମାନବିକ ପ୍ରାଦୁର୍ଭାବ ଯୋଗୁଁ ଏ ଅଞ୍ଚଳରେ ଏସୀୟ ସିଂହମାନେ ନିଶ୍ଚିହ୍ନ ହୋଇଯିବାର ଭୟଥିଲା । 1972 ମସିହାରେ ଗୀର୍ ସିଂହ ଅଭୟାରଣ୍ୟର ରକ୍ଷଣାବେକ୍ଷଣ ଲାଗି ସଂରକ୍ଷଣ ନିୟନ୍ତ୍ରକ ସର୍ତ୍ତାବଳୀ ଅନୁଯାୟୀ ରାଜ୍ୟସରକାର ଏକ ଯୋଜନା ପ୍ରସ୍ତୁତ କଲେ । ସିଂହ ବାସସ୍ଥଳୀର ସୁରକ୍ଷା ଓ ଉନ୍ନତି ଲାଗି କେନ୍ଦ୍ରସରକାର ସାହାଯ୍ୟ ଦେଲେ ।

## ହିମାଳୟ କସ୍ତୁରୀମୃଗ ପ୍ରକଳ୍ପ

ଏକଦା ସମଗ୍ର ହିମାଳୟ ପାର୍ବତ୍ୟାଞ୍ଚଳରେ ବ୍ୟାପକ ଭାବରେ ବାସକରୁଥିବା କସ୍ତୁରୀମୃଗର

କସ୍ତୁରୀରୁ ସୁଗନ୍ଧ ଦ୍ରବ୍ୟ ଏବଂ ଔଷଧ ଆଦିର ପ୍ରସ୍ତୁତି ଯୋଗୁଁ ମଣିଷ ଦ୍ୱାରା ଏ ଜାତିର ମୃଗମାନେ ଅତିଶୟ ଉତ୍ପୀଡ଼ିତ ହୋଇଛନ୍ତି । ଏଥିସହିତ ସେମାନଙ୍କ ବାସସ୍ଥଳୀର ବିଧ୍ୱଂସନ ଯୋଗୁଁ ସେମାନଙ୍କ ସଂଖ୍ୟା ପ୍ରବଳଭାବରେ ହ୍ରାସ ପାଇଛି । ଏଥିଲାଗି ଉତ୍ତର ପ୍ରଦେଶ କେଦାରନାଥ ଅଭୟାରଣ୍ୟରେ ଭାରତ ସରକାରଙ୍କ ସହଯୋଗରେ "ଆନ୍ତର୍ଜାତୀୟ ପ୍ରକୃତି ଓ ପ୍ରାକୃତିକ ସମ୍ବଳ ସଂରକ୍ଷଣ ସଂଘ" (I.U.C.N)ର "ଭାତତ୍ରସ୍ତ ମୃଗ" କାର୍ଯ୍ୟକ୍ରମ ଅଧୀନରେ ଏକ କସ୍ତୁରୀମୃଗ ସଂରକ୍ଷଣ ପ୍ରକଳ୍ପ ଆରମ୍ଭ କରାଗଲା ।

## ମଣିପୁରୀ ହରିଣ ପ୍ରକଳ୍ପ

ମଣିପୁରୀ ହରିଣମାନେ ପୃଥିବୀର ସର୍ବାଧିକ ଦୁଷ୍ପ୍ରାପ୍ୟ ସ୍ତନ୍ୟପାୟୀ ପ୍ରାଣୀମାନଙ୍କ ମଧ୍ୟରେ ଅନ୍ୟତମ । ଲୋକ୍‌ଟାକ୍ ହ୍ରଦର ଦକ୍ଷିଣ ପୂର୍ବ କୋଣସ୍ଥ କିବୁଲ୍‌ଲାମ୍‌ଜୋଆଠାରେ ସୀମିତ ଭାବରେ ଏ ଜାତିର ମୃଗଙ୍କୁ ଦେଖିବାକୁ ମିଳେ । 1977 ମସିହାରେ ଏମାନଙ୍କ ସଂଖ୍ୟା ମାତ୍ର 18 ଥିଲା । ଫଳରେ 1977 ମସିହାରେ ଏ ଅଞ୍ଚଳକୁ ଜାତୀୟ ଉଦ୍ୟାନ ଭାବରେ ଘୋଷଣା କରାଯାଇ ମଣିପୁରୀ ହରିଣମାନଙ୍କ ସୁରକ୍ଷା ଦିଗରେ ପଦକ୍ଷେପମାନ ନିଆଗଲା ।

## କାଶ୍ମୀର ହରିଣ ପ୍ରକଳ୍ପ

କାଶ୍ମୀର ମୃଗ ବା ହେଙ୍ଗୁଲ ଏକ ବିପନ୍ନ ସ୍ତନ୍ୟପାୟୀ ପ୍ରାଣୀ । ଦାଚିଗାଁ ଅଭୟାରଣ୍ୟ ଓ ଜାମ୍ମୁ କାଶ୍ମୀର ତଥା ହିମାଚଳ ପ୍ରଦେଶରେ ଏମାନେ ଏବେ ବିକ୍ଷିପ୍ତ ଭାବରେ ଅଛନ୍ତି । ବାସସ୍ଥଳୀ ବିଧ୍ୱଂସନ, ଗୋମେଷାଦି ଗୃହପାଳିତ ପଶୁମାନଙ୍କ ଦ୍ୱାରା ଚାରଣଭୂମି ଭାବରେ ଅତ୍ୟଧିକ ଚଳପଣର ଉପଯୋଗ ଓ ଶିକାର ଯୋଗୁଁ ଏମାନଙ୍କ ସଂଖ୍ୟା 1970 ମସିହା ସୁଦ୍ଧା 200 ରୁ ମଧ କମିଗଲା । ଆନ୍ତର୍ଜାତୀୟ ପ୍ରକୃତି ଓ ପ୍ରାକୃତିକ ସମ୍ବଳ ସଂରକ୍ଷଣ ସଂଘ (IUCN) ସହିତ ପ୍ରକୃତି ପାଇଁ ବିଶ୍ୱବ୍ୟାପି ପୁଞ୍ଜି (W.W.F.) ସଂସ୍ଥାର ସହଯୋଗରେ ଏ ଜାତୀୟ ମୃଗମାନଙ୍କର ସୁରକ୍ଷା ଓ ସଂରକ୍ଷଣ ଲାଗି ଜାମ୍ମୁ କାଶ୍ମୀର ରାଜ୍ୟ ତରଫରୁ 1970 ମସିହାରେ "କାଶ୍ମୀର ହରିଣ ପ୍ରକଳ୍ପ" ଆରମ୍ଭ କରାଗଲା । ଏଥିରୁ ଆଶାପ୍ରଦ ଫଳ ମିଳି ପାରିଛି ଓ 1980 ମସିହା ସୁଦ୍ଧା ଏ ଜାତିର ମୃଗ ସଂଖ୍ୟା ବଢ଼ି 340 ରୁ ଅଧିକ ହୋଇଛି ।

## କୁମ୍ଭୀର ପ୍ରଜନନ ପ୍ରକଳ୍ପ

ଭାରତରେ ଦେଖାଯାଉଥିବା ଘଡ଼ିଆଳ, ଗୋମୁହାଁ ଓ ବଉଳା ତିନିଜାତିର କୁମ୍ଭୀର 1970 ମସିହା ପ୍ରାରମ୍ଭ ସୁଦ୍ଧା ଦୁଷ୍ପ୍ରାପ୍ୟ ହୋଇ ପଡ଼ିଥିଲେ । ମିଳିତ ଜାତିସଂଘ ବିକାଶ ଯୋଜନା (UNDP) ସହାୟତାରେ ଭାରତ ସରକାର 1975 ମସିହାରେ ପ୍ରଥମ କରି ଓଡ଼ିଶାରେ ଏକ କୁମ୍ଭୀର ପ୍ରଜନନ ଓ ପାଳନ ପ୍ରକଳ୍ପ ଆରମ୍ଭ କଲେ । ପରେ ଏହି ପ୍ରକଳ୍ପ ଉତ୍ତର ପ୍ରଦେଶ, ରାଜସ୍ଥାନ, ପଶ୍ଚିମବଙ୍ଗ,

ତାମିଲନାଡୁ, ଆନ୍ଧ୍ରପ୍ରଦେଶ, ଗୁଜୁରାଟ, କେରଳ, ମଧ୍ୟ ପ୍ରଦେଶ, ମହାରାଷ୍ଟ୍ର, ଆଣ୍ଡାମାନ, ଆସାମ, ବିହାର ଓ ନାଗାଲାଣ୍ଡକୁ ପ୍ରସାରିତ ହେଲା । ଦେଶର ବାରଟି ଅଭୟାରଣ୍ୟରେ ଏଭଳି ପ୍ରଜନନ ପ୍ରକଳ୍ପ ଗୁଡ଼ିକର ପରିଚାଳନା ଫଳରେ ଉକ୍ତ ତିନି ଜାତିର କୁମ୍ଭୀରଙ୍କ ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଛି ।

### ହାତୀ ପ୍ରକଳ୍ପ

ଦେଶରେ ହାତୀ ମାନଙ୍କ ସୁରକ୍ଷା ଓ ସଂରକ୍ଷଣ ଲାଗି ବ୍ୟାଘ୍ର ପ୍ରକଳ୍ପ ଢାଞ୍ଚାରେ ଗୋଟିଏ ପ୍ରକଳ୍ପର ସୂତ୍ରପାତ ହୋଇଛି । ଏହି ପ୍ରକଳ୍ପ ଜରିଆରେ ହାତୀମାନଙ୍କ ଲାଗି ବିଲୁପ୍ତ ଓ ନଷ୍ଟ ହୋଇଯାଉଥିବା ବାସସ୍ଥଳୀ ପୁନରୁଦ୍ଧାର କରାଯିବ । ସ୍ଥାନାନ୍ତର ଅଳିନ୍ଦ ଗଠନ, ମାନବିକ ହସ୍ତକ୍ଷେପ ନିରାକରଣ, ହାତୀମାନଙ୍କ ସ୍ଥାନ ପରିବର୍ତ୍ତନ ଓ ସଂଖ୍ୟାଭିତ୍ତିକ ତଥ୍ୟ ବିଷୟକ ଗତି ବିଜ୍ଞାନର ପ୍ରତିଷ୍ଠା ଦିଗରେ ପଦକ୍ଷେପ ନିଆଯିବ ।

## ଆଇନ୍ ପ୍ରଣୟନ

### ଭାରତୀୟ ବନ୍ୟପ୍ରାଣୀ (ସୁରକ୍ଷା) ଆଇନ୍, 1972

1972 ମସିହାରେ ପ୍ରଣୀତ ଭାରତୀୟ ବନ୍ୟପ୍ରାଣୀ(ସୁରକ୍ଷା) ଆଇନ୍ ହେଉଛି ବିଭିନ୍ନ ପଶୁପକ୍ଷୀ, ସରୀସୃପ, ଉଭୟଚର ପ୍ରାଣୀ ଓ କୀଟପତଙ୍ଗ ଇତ୍ୟାଦି ବନ୍ୟପ୍ରାଣୀ, ବିଶେଷ କରି ବିପନ୍ନ ଜାତିର ଜୀବମାନଙ୍କର ସୁରକ୍ଷା ଲାଗି ଆଇନଗତ ବ୍ୟବସ୍ଥା କରିବା ଦିଗରେ ଏକ ବ୍ୟାପକ ସାମ୍ବିଧାନିକ ପ୍ରଣୟନ । ଏହି ଆଇନ୍‌ରେ ଜାତୀୟ ଉଦ୍ୟାନ ଓ ଅଭୟାରଣ୍ୟ ପ୍ରତିଷ୍ଠା, ବନ୍ୟପ୍ରାଣୀ ଓ ସେମାନଙ୍କ ଠାରୁ ପ୍ରସ୍ତୁତ ଦ୍ରବ୍ୟାଦିର ବ୍ୟବସାୟ-ବାଣିଜ୍ୟ ଉପରେ ନିୟନ୍ତ୍ରଣର ବ୍ୟବସ୍ଥା ଅଛି ।

ଉକ୍ତ ଆଇନ୍‌ର ୬ଟି ତଫସିଲରେ ପୂର୍ଣ୍ଣସୁରକ୍ଷା ପାଇବା ଉପଯୁକ୍ତ ଦୁଷ୍ପ୍ରାପ୍ୟ ଓ ବିପନ୍ନ ଜାତିର ପ୍ରାଣୀ ଏବଂ ସ୍ୱତନ୍ତ୍ର ଶିକାର ଉପଯୋଗୀ ଜୀବ, ଯେଉଁମାନଙ୍କ ଲାଗି କଠୋର ସୁରକ୍ଷାର ଆବଶ୍ୟକତା ଅଛି (ମାତ୍ର ବିଶେଷ ପରିସ୍ଥିତିରେ ଏମାନଙ୍କ ଶିକାର ଲାଗି ଅନୁମତି ପତ୍ର ଦିଆଯାଇ ପାରେ) ସେଭଳି ଜୀବଜନ୍ତୁଙ୍କର ତାଲିକା ଅଛି ।

ଆଇନ୍‌ରେ ଥିବା ବିଧାନ ଗୁଡ଼ିକ ଥରକୁଥର ସଂଶୋଧିତ ହୋଇଛି । 1991 ମସିହା ଅକ୍ଟୋବର 2ତାରିଖ ଦିନ ଏହି ଆଇନ୍‌ର ଏକ ଗୁରୁତର ସଂଶୋଧନ କାର୍ଯ୍ୟକାରୀ ହେଲା । ଯେଉଁଥିରେ ବନ୍ୟପ୍ରାଣୀମାନଙ୍କର ସୁରକ୍ଷାକୁ ଅତ୍ୟଧିକ କଡ଼ାକଡ଼ି କରାଯାଇଛି, ଓ ଆଇନ୍ ଅମାନ୍ୟକାରୀ ପ୍ରତି ଅଧିକ କଠୋର ଦଣ୍ଡର ବ୍ୟବସ୍ଥା ଅଛି । ଏପରିକି, ଅପରାଧୀକୁ ସିଧା ବିଚାରାଳୟକୁ ପଠାଇଦେବାର କ୍ଷମତା କର୍ତ୍ତୃପକ୍ଷଙ୍କୁ ପ୍ରଦାନ କରାଯାଇଛି । ଏହି ଆଇନ୍‌ର ନବମଧାରାରେ I, II, III, ଓ IV ତେପସିଲଭୁକ୍ତ ବନ୍ୟଜନ୍ତୁମାନଙ୍କୁ ଶୀକାର କରିବା ନିଷିଦ୍ଧ

ହୋଇଛି । ବନ୍ୟଜନ୍ତୁ ଶିକାରୀ କିମ୍ବା ସେହି ପଶୁଙ୍କ ଜିନିଷପତ୍ର ବ୍ୟବସାୟୀ, ସେସବୁର ପରିବହନ କାରୀମାନଙ୍କୁ ନିବର୍ତ୍ତାଇବା ଲାଗି ଭୀଷଣ ଦଣ୍ଡ ଦିଆଯିବାର କଡ଼ାକଡ଼ି ବ୍ୟବସ୍ଥା ମଧ୍ୟ ଏହି ଆଇନରେ ଅଛି ।

## ସାଇଟ୍ସ୍

1975 ମସିହାରେ ବିପନ୍ନ ବନ୍ୟ ବୃକ୍ଷଲତା ଓ ଜୀବଜନ୍ତୁଙ୍କ ଆନ୍ତର୍ଜାତୀୟ ବ୍ୟବସାୟ ନିରୋଧ ଲାଗି ପ୍ରତିନିଧି ସଭା (CITES)ଗଠିତ ହେଲା । ଭାରତ ଏହି ସଭାର ଏକ ଚୁକ୍ତିକାରୀ ଦେଶ । ସମସ୍ତ ଚୁକ୍ତି ସ୍ୱାକ୍ଷରକାରୀ ଦେଶ ମାନେ ଏକମତ ହୋଇଛନ୍ତି ଯେ :

(i) ଅନେକ ସୁନ୍ଦର ଓ ନାନା ଆକୃତିର ବନ୍ୟ ବୃକ୍ଷଲତା ଓ ଜୀବଜନ୍ତୁମାନେ ବିଶ୍ୱ ପ୍ରାକୃତିକ ପଦ୍ଧତିର ଏକ ଅପୂରଣୀୟ ଅଙ୍ଗ ।

(ii) ଏହି ସଭା ବନ୍ୟ ଲତା ଓ ଜୀବଜନ୍ତୁ ମାନଙ୍କର ଚିର ବର୍ଦ୍ଧିଷ୍ଣୁ, ସୌନ୍ଦର୍ଯ୍ୟ ଭିତ୍ତିକ, ବୈଜ୍ଞାନିକ, ସାଂସ୍କୃତିକ, ଚିତ୍ତବିନୋଦକ ଓ ଅର୍ଥନୈତିକ ମୂଲ୍ୟାୟନ ପ୍ରତି ସଚେତନ ରହିବ ।

(iii) ବିଭିନ୍ନ ଦେଶ ଓ ଜନସାଧାରଣ ସେମାନଙ୍କ ନିଜର ବୃକ୍ଷଲତା ଓ ପଶୁ ପକ୍ଷୀ ମାନଙ୍କର ଶ୍ରେଷ୍ଠ ରକ୍ଷକ ଅଟନ୍ତି ଓ ହେବା ଉଚିତ ।

(iv) ଆନ୍ତର୍ଜାତିକ ବ୍ୟବସାୟ ଫଳରେ କେତେ ଜାତିର ବନ୍ୟ ବୃକ୍ଷଲତା ଓ ବନ୍ୟ ପଶୁପକ୍ଷୀଙ୍କର ବହୁଳ ଶୋଷଣ ଘଟୁଛି, ତା ବିରୁଦ୍ଧରେ ପଦକ୍ଷେପ ନେବା ଲାଗି ଓ ସେହି ପ୍ରାଣୀମାନଙ୍କ ସୁରକ୍ଷା ପାଇଁ ଆନ୍ତର୍ଜାତୀୟ ସହଯୋଗ ଆବଶ୍ୟକ, ଏବଂ

(v) ଏ ଦିଗରେ ବିହିତ ପଦକ୍ଷେପ ନେବା ଅତି ଜରୁରୀ ଅଟେ ।

ବନ୍ୟଜନ୍ତୁ ସଂରକ୍ଷଣ କ୍ଷେତ୍ରରେ ଆନ୍ତର୍ଜାତୀୟ ପ୍ରତିନିଧି ସଭା (CITES) ହେଉଛି ଏକ ଗୁରୁତର ପଦକ୍ଷେପ, କାରଣ ଏହା ଦ୍ୱାରା ଆନ୍ତର୍ଜାତିକ ସ୍ତରରେ ସହଯୋଗର ଧାରା ପ୍ରବର୍ତ୍ତିତ ହୋଇଛି । ଏହା ବିନା ବନ୍ୟଜନ୍ତୁ ମାନଙ୍କର ବେଆଇନ୍ ବ୍ୟବସାୟ ନିୟନ୍ତ୍ରିତ ହୋଇପାରିବ ନାହିଁ ।

## ସଂରକ୍ଷଣ ସପକ୍ଷରେ ସଚେତନତା ସୃଷ୍ଟି

ଯଦି ଆହୁରି ଅଧିକ ଜାତିର ବନ୍ୟଜନ୍ତୁ ବିପନ୍ନ ହୋଇପଡ଼ନ୍ତି ବା ନିଶ୍ଚିହ୍ନ ହୋଇଯାଆନ୍ତି ତାହେଲେ ହେବ କଅଣ ? ଚିରଦିନଲାଗି ଯଦି ଭାରତୀୟ ଚିତାବାଘ ଲୋପ ପାଇଯାଏ, କିମ୍ବା ଏସୀୟ ସିଂହ ଯଦି ଦୟନୀୟ ଭାବରେ ଧ୍ୱଂସମୁଖକୁ ଠେଲି ହୋଇଯାଏ ତହିଁରେ ଆମେ ଉଦ୍‌ବିଗ୍ନ ହେବାର କାରଣ କ'ଣ ? ବାଘ ମାନଙ୍କ ସୁରକ୍ଷା ଲାଗି ଆମେ କାହିଁକି କୋଟିକୋଟି ଟଙ୍କା ଖର୍ଚ୍ଚ କରିବୁ ? ଏସବୁ ପ୍ରଶ୍ନ "କିପରି" "କଅଣ" "କାହିଁକି"ର ଉତ୍ତର ଉପରେ ଭିତ୍ତି କରି ଜନସାଧାରଣଙ୍କ ଭିତରେ ସଂରକ୍ଷଣ ସଚେତନତାର ସୃଷ୍ଟି, ଏହି ସଚେତନତା ହେଉଛି-ଜୈବ ଭିନ୍ନତାର ପ୍ରାଧାନ୍ୟ ସ୍ୱୀକାର;

ପରିବେଶର ସଂରକ୍ଷଣ ତଥା ସ୍ଥିରତା ରକ୍ଷା ; ପ୍ରକୃତି ବକ୍ଷରେ ଲାଳିତ ଜୀବଜଗତ ମଧ୍ୟରେ ଆନ୍ତଃ ସମ୍ପର୍କ ରକ୍ଷା ଓ ପ୍ରକୃତିପୁଷ୍ଟ ପୃଥିବୀ ସହିତ ମାନବ ସମାଜର ସହଯୋଗ ।

ଉଭୟ ଆନୁଷ୍ଠାନିକ ଓ ଅଣଆନୁଷ୍ଠାନିକ ସ୍ତରରେ ସଂରକ୍ଷଣ ଶିକ୍ଷା ଓ ସଚେତନତାର ସାଫଲ୍ୟ ହାସଲ ହେବା ଉଚିତ୍ । ଆନୁଷ୍ଠାନିକ ସ୍ତରରେ ଏହି ଦାୟିତ୍ୱ ମୁଖ୍ୟତଃ ସ୍କୁଲ, କଲେଜ ଓ ମହାବିଦ୍ୟାଳୟ ଉପରେ ନିର୍ଭର କରେ । ସ୍କୁଲ ଓ କଲେଜ ସ୍ତରରେ ପରିବେଶ ଅନୁଧ୍ୟାନ ଓ ବନ୍ୟପ୍ରାଣୀ ସଂରକ୍ଷଣ ବିଷୟକ ଶିକ୍ଷାର ବା ପାଠ୍ୟକ୍ରମ ପ୍ରବର୍ତ୍ତନ ସତ୍ତ୍ୱେ ଏସବୁ ମୁଖ୍ୟତଃ ପୁସ୍ତକରତ ବା ପରୀକ୍ଷାକୈନ୍ଦ୍ରିକ ହୋଇପଡ଼ିଛି । ଏପରି ଅବସ୍ଥାରେ ସବୁ ସ୍ତରର ଜନସାଧାରଣ-ଶିଶୁ, କିଶୋର, ବୟସ୍କ, ପରିବାର, ଛାତ୍ର, ଶିକ୍ଷକ, ପ୍ରଶାସକ, ରାଜନୈତିକ ଦଳ ଓ ନୀତି ନିର୍ଦ୍ଧାରକ ମାନଙ୍କ ମଧ୍ୟରେ ଉଚିତ କିସମର ସଚେତନତା ଓ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବା ଲାଗି ଅଣଆନୁଷ୍ଠାନିକ ଶିକ୍ଷାର ଅଧିକ ଆବଶ୍ୟକତା ଅଛି ।

ଏ ବିଷୟରେ ଭବିଷ୍ୟତ ଲାଗି ସକଳ ଆଶାର କେନ୍ଦ୍ର ହେଉଛନ୍ତି ଶିଶୁ ଓ ଯୁବଗୋଷ୍ଠୀ । ପରିବେଶ ପ୍ରତି ଉଚିତ୍ ଦୃଷ୍ଟିଭଙ୍ଗୀ ସୃଷ୍ଟି ହେବା ଓ ସଂରକ୍ଷଣ ଉଦ୍ୟମ ପ୍ରତି ସେମାନେ କିପରି ସାହାଯ୍ୟ କରିପାରିବେ, ସେ ସମ୍ବନ୍ଧୀୟ ସଚେତନତା ହେଉଛି ଅତି ଗୁରୁତର ବ୍ୟାପାର । ପ୍ରଚଳିତ ଶିକ୍ଷା ଜରିଆରେ ଏହା ହାସଲ କରାଯାଇପାରିବ ନାହିଁ ବୋଲି ନିଶ୍ଚିତ ଭାବରେ କୁହାଯାଇପାରେ । ଯଦି ଅଣଆନୁଷ୍ଠାନିକ ଶିକ୍ଷା ଏକମାତ୍ର ପନ୍ଥା ବୋଲି ବିବେଚିତ ହୁଏ, ତା ହେଲେ ଏହି ଉଦ୍ଦେଶ୍ୟରେ ଉଚିତ୍ ମାଧ୍ୟମ ଦେଇ କାର୍ଯ୍ୟ ହାସଲ କରିବାର ଉପାୟ ବାହାର କରିବାକୁ ହେବ । ସାର୍ବଜନୀନ ପ୍ରଚାର ମାଧ୍ୟମ, ଯଥା- ଖବର କାଗଜ, ପତ୍ରିକା, ରେଡ଼ିଓ, ଦୂରଦର୍ଶନ, ଜାତୀୟ ଉଦ୍ୟାନ, ଅଭୟାରଣ୍ୟ, ଚିଡ଼ିଆଖାନା ଓ ପ୍ରାକୃତିକ ଐତିହାସିକ ଯାଦୁଘର ବା ଜୀବଜନ୍ତୁଙ୍କ ସଂଗ୍ରହାଳୟ ଇତ୍ୟାଦି ଜନସାଧାରଣଙ୍କ ମଧ୍ୟରେ ସଂରକ୍ଷଣ ସମ୍ବନ୍ଧୀୟ ସଚେତନତା ସୃଷ୍ଟି କରିବା ଦିଗରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବେ ।

ବନ୍ୟପ୍ରାଣୀ ଓ ସଂରକ୍ଷଣ ଦିଗରେ ଏକ ବୁଝାମଣା ଓ ସଚେତନତା ସୃଷ୍ଟି କରିବା ପାଇଁ ପ୍ରକୃତି ପ୍ରତି ସମ୍ମାନ, ପ୍ରେମ ଓ ପ୍ରଶଂସା ଜନକ ମନୋବୃତ୍ତି ବିକାଶ ଲାଭ କରିବା ଉଚିତ୍ । ଅନେକ ଲୋକଙ୍କର ଦୈନନ୍ଦିନ ଜୀବନରେ ସେମାନେ ଦେଖୁଥିବା ପ୍ରାଣୀ ଓ ଉଦ୍ଭିଦ ମାନଙ୍କର ନାମ ପର୍ଯ୍ୟନ୍ତ ଜାଣିବାର ମୌଳିକ କୌତୂହଳ ନାହିଁ । ତେଣୁ ବୃକ୍ଷଲତା ଓ ଜୀବଜନ୍ତୁଙ୍କ ବିଷୟରେ ଜାଣିବା ପାଇଁ କୌତୂହଳ, ଅନୁସନ୍ଧିତ୍ସୁ ମନ ଓ ସେମାନଙ୍କୁ ପର୍ଯ୍ୟବେକ୍ଷଣ କରିବାର ବଳବତୀ ଇଚ୍ଛା ହେଉଛି ଅଧିକ ଗୁରୁତ୍ୱପୂର୍ଣ୍ଣ । ପ୍ରକୃତିକୁ ଭଲ ପାଇବା ଓ ମନୁଷ୍ୟ ଆଦି ସବୁଜାତିର ପ୍ରାଣୀ ଓ ଉଦ୍ଭିଦ ମାନଙ୍କର ଆନ୍ତଃ ନିର୍ଭରଶୀଳତା ପ୍ରତି ସଚେତନତାରୁ ହିଁ ସଂରକ୍ଷଣ ଲାଗି ଆଗ୍ରହ ସୃଷ୍ଟି ହୋଇପାରିବ ।

## ବ୍ୟକ୍ତିଗତ ଭୂମିକା

ଆମ ଦେଶର ବିପନ୍ନ ଓ ବିଲୁପ୍ତ ହୋଇ ଆସୁଥିବା ପ୍ରାଣୀମାନଙ୍କ ଲାଗି ଆପଣ, ମୁଁ ବା ଆମେ

ସମସ୍ତେ ମିଶି କଥଣ କରି ପାରିବା ? ସଂରକ୍ଷଣ ଦିଗରେ ବ୍ୟକ୍ତି ବିଶେଷଙ୍କର ଯେ ବିପୁଳ ଅବଦାନ ଥାଇପାରେ ଏହା ଅଧିକାଂଶ ଲୋକ ଅନୁଭବ କରୁନାହାନ୍ତି । ବନ୍ୟପ୍ରାଣୀ ସୁରକ୍ଷା ଆଇନ୍ ଓ ସରକାରୀ ବା ଅନ୍ୟାନ୍ୟ ଅନୁଷ୍ଠାନ ମାନଙ୍କ ଦ୍ୱାରା ଗୃହୀତ କାର୍ଯ୍ୟକ୍ରମଗୁଡ଼ିକ (ଜ୍ଞାନୀ ବା ଶିକ୍ଷିତ ଲୋକ ମାନଙ୍କ ) ସର୍ବସାଧାରଣଙ୍କ ବିନା ସହଯୋଗରେ ସଫଳକାମ ହୋଇ ପାରିବନାହିଁ । ପ୍ରତ୍ୟେକ ବ୍ୟକ୍ତି ପ୍ରକୃତି ଓ ବନ୍ୟଜନ୍ତୁଙ୍କ ପ୍ରତି ନିଜନିଜର ବ୍ୟକ୍ତିଗତ ନୀତି ବା ଶାଳତାର ବିକାଶ କରିବା ଦ୍ୱାରା ବନ୍ୟପ୍ରାଣୀ ମାନଙ୍କୁ ନଷ୍ଟ ନକରିବାର ପ୍ରତିଶ୍ରୁତି ଓ ପ୍ରତ୍ୟୟର ବାଟ ଫିଟିଯିବ । ଏଭଳି ନିଜ ପକ୍ଷରେ ଶିକାରକୁ ଏକ ଚିତ୍ତବିନୋଦକ ବା କୌତୂକପ୍ରଦ କ୍ରୀଡ଼ା ଭାବରେ ଗ୍ରହଣ ନକରିବା, ବିପନ୍ନ ପ୍ରାଣୀମାନଙ୍କ ଚମଡ଼ା ବା ଅନ୍ୟ ଅଙ୍ଗପ୍ରତ୍ୟଙ୍ଗ ଦ୍ୱାରା ପ୍ରସ୍ତୁତ କୋଟ୍, ବ୍ୟାଗ୍, ଯୋତା, ବେଲ୍ଟ ବା ହାତୀ ଦାନ୍ତ, କଇଁଚ ଖୋଳପା, କସ୍ତୁରୀ ଓ ହରିଣ ଶିଂଘ ଇତ୍ୟାଦି ବ୍ୟବହାର ନକରିବା ଇତ୍ୟାଦି । ବ୍ୟବହାରକାରୀମାନଙ୍କ ଦ୍ୱାରା ଏସବୁ ଦ୍ରବ୍ୟ ବାସନ୍ଦ ନହେବା ପର୍ଯ୍ୟନ୍ତ ଚୋରା ବେପାରୀମାନଙ୍କ ଦ୍ୱାରା ବନ୍ୟଜନ୍ତୁ ମାନଙ୍କର ପ୍ରଚ୍ଛନ୍ନ ଶିକାର ଚାଲୁ ରହିଥିବ । ଆମର ବନ୍ଧୁ, ପରିବାର, ଓ ସର୍ବୋପରି ସମାଜ ସାରା ସଂରକ୍ଷଣର ବାର୍ତ୍ତା ପ୍ରଚାର କରିବାରେ ଆମେ ପ୍ରତ୍ୟେକେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିବା ।

ଆମେମାନେ ଭାଗ୍ୟବାନ ଯେ, ଆମ ଦେଶରେ ପରିବେଶର ସୁରକ୍ଷା ଓ ବନ୍ୟପ୍ରାଣୀ ସଂରକ୍ଷଣ ଦିଗରେ ସରକାର ଦୃଢ଼ ପ୍ରତିଶ୍ରୁତିବଦ୍ଧ । ଏତଦ୍‌ବ୍ୟତୀତ ଦେଶରେ ବହୁସଂଖ୍ୟକ ଦକ୍ଷ ତଥା ପେଶାଦାର ବନ୍ୟପ୍ରାଣୀ ବିଶାରଦ ଓ ସଂରକ୍ଷଣବିତ୍ ଅଛନ୍ତି, ଏବଂ ଏ ଦିଗରେ ବହୁ ଆନୁଷ୍ଠାନିକ ସମର୍ଥନ, ଯଥେଷ୍ଟ ଆଇନ୍‌ଗତ ବ୍ୟବସ୍ଥା ଓ ସଂରକ୍ଷଣ ପ୍ରଚେଷ୍ଟାକୁ କାର୍ଯ୍ୟକାରୀ କରିବା ଭଳି ପ୍ରଚୁର ଆନୁସଙ୍ଗିକ ସୁବିଧା ସୁଯୋଗ ରହିଛି । ଆମର ମଧ୍ୟ ସଂରକ୍ଷଣ ଦିଗରେ ଜନମତ ସୃଷ୍ଟି କରିବା ଲାଗି ବହୁ ସ୍ୱେଚ୍ଛାସେବୀ ଦଳ ଓ କାର୍ଯ୍ୟାନୁଷ୍ଠାନକାରୀ ଦଳ ଅଛନ୍ତି । ସର୍ବୋପରି, ଆବହମାନ କାଳରୁ ବର୍ତ୍ତମାନ ଯାଏଁ ସଂରକ୍ଷଣ ସାଫଲ୍ୟଗୁଡ଼ିକ ବହୁ ଚମତ୍କାର ଘଟଣାବଳୀ ଲିପିବଦ୍ଧ ହୋଇ ରହିଛି । ତଥାପି ମଧ୍ୟ ଆମକୁ ଆହୁରି ଅନେକ ଦୂର ଯିବାକୁ ବାକୀ ଅଛି । ଏହି ଦୀର୍ଘ ପଥ ଆମକୁ ଅତିକ୍ରମ କରିବାକୁ ହିଁ ହେବ ।

ଆନ୍ତର୍ଜାତୀୟ ପ୍ରକୃତି ଓ ପ୍ରାକୃତିକ ସମ୍ବଳ ସଂରକ୍ଷଣ ସଂଘ (I.U.C.N.)ର ପୂର୍ବତନ ସାଧାରଣ ନିର୍ଦ୍ଦେଶକ ଡାକ୍ତର୍. ଏ. ମନ୍‌ରୋ 1979 ମସିହାରେ କାନାଡ଼ାର ଟରଣ୍ଟୋ ଠାରେ ଅନୁଷ୍ଠିତ ଉତ୍ତର ଆମେରିକା ବନ୍ୟପ୍ରାଣୀ ଓ ପ୍ରାକୃତିକ ସମ୍ବଳ ସମ୍ମିଳନୀର 44ତମ ଅଧିବେଶନରେ ଜୀବନ୍ତ ବନ୍ୟସମ୍ବଳଗୁଡ଼ିକର ସଂରକ୍ଷଣ-କୌଶଳ ଉପରେ ଭାଷଣ ଦେଇ କହିଥିଲେ ଯେ, ବର୍ତ୍ତମାନ 'ସଂରକ୍ଷଣ' ଏକ ପ୍ରଚଣ୍ଡ ବିଫଳତାର ଧାରରେ ଉପନୀତ ହୋଇଛି । ଏଥି ସହିତ ସମତାଳରେ ବର୍ତ୍ତମାନ ପରିପ୍ରେକ୍ଷୀରେ ଏହାର ସଫଳତା ଦିଗରେ ମଧ୍ୟ ଏତେ ସୁବିଧା ସୁଯୋଗ ଆସି ଜୁଟିଲାଣି, ଯାହା ଅତୀତରେ କେବେ ନଥିଲା । ଏସବୁ ସୁବିଧା ସୁଯୋଗ ହାସଲ କରି ସଂରକ୍ଷଣକୁ ଏକ ଗଣ-ଆନ୍ଦୋଳନରେ ରୂପାୟିତ କରିବା ଉପରେ ଭବିଷ୍ୟତର ସାଫଲ୍ୟ ନିର୍ଭର

କରେ । ଆମର ବନ୍ୟପ୍ରାଣୀ ସଂରକ୍ଷଣ ଲାଗି ଗତ ଦୁଇ ଦଶନ୍ଧି ଧରି ଭାରତରେ ହୋଇଥିବା ସମସ୍ତ ପ୍ରଚେଷ୍ଟା ଯଦି ଭବିଷ୍ୟତ ପାଇଁ କୌଣସି ସୂଚନା ଦେଇଥାଏ, ତେବେ ଏ ଦିଗରେ ଆଶାବାଦୀ ହେବାଲାଗି ଯଥେଷ୍ଟ କାରଣ ରହିଛି ।

# ସହାୟକ ଗ୍ରନ୍ଥସୂଚୀ


ଅଲୀ, ସଲୀମ୍ (1979) : *ଦି ବୁକ୍ ଅଫ୍ ଇଣ୍ଡିଆନ୍ ବାର୍ଡ୍ସ୍*, ବମ୍ବେ ନ୍ୟାଚୁରାଲ ହିଷ୍ଟ୍ରି ସୋସାଇଟୀ, ବମ୍ବେ ।

ଆଣ୍ଡରସନ୍, ଷ୍ଟାନ୍ଲୀ ଏଚ୍. (1991) : *ମ୍ୟାନେଜିଙ୍ଗ୍ ଆୱାର ୱାଇଲ୍ଡ ଲାଇଫ୍ ରିସୋର୍ସେସ୍*, ପ୍ରେଣ୍ଟିସ୍ ହଲ୍, ଇଙ୍ଗଲଉଡ୍ କ୍ଲିଫ୍ସ୍, ନିଉଜର୍ସି ।

ଓୱେନ୍. ଅଲିଭର ଏସ୍. (1985) : *ନ୍ୟାଚୁରାଲ୍ ରିସୋର୍ସେସ୍ କନ୍ଜରଭେସନ୍-ଆନ୍ ଇକୋଲୋଜିକାଲ ଆପ୍ରୋଚ୍* (ଚତୁର୍ଥ ସଂସ୍କରଣ), ମ୍ୟାକ୍ମିଲାନ୍ ପବ୍. କୋ., ନ୍ୟୁୟର୍କ ଆଣ୍ଡ କୋଲିଅର ମ୍ୟାକ୍ମିଲାନ୍ ପବ୍., ଲଣ୍ଡନ ।

ଓସ୍ମାଟନ୍, ବି. ବି. ଆଣ୍ଡ ସାଲେ, ଜେ. ବି. (1989) : *ୱାଇଲ୍ଡ ଲାଇଫ୍ ଅଫ୍ ଡେରାଡୁନ୍ ଆଣ୍ଡ ଆଡ୍ଜାସେଣ୍ଟ ହିଲ୍ସ୍*, ନଟରାଜ ପବ୍ଲିଶର୍ସ୍, ଡେରାଡୁନ୍ ।

ଏଲିଚ୍, ପଲ୍ ଆଣ୍ଡ ଆନ୍ (1981) : *ଏକ୍ସଟିଙ୍କ୍ସନ୍-ଦି କଜେସ୍ ଆଣ୍ଡ କନ୍ସେକ୍ୱେନ୍ସେସ୍ ଅଫ ଦି ଡିସ୍ଆପିଅରାନ୍ସ୍ ଅଫ୍ ସ୍ପେସିସ୍*, ଭିକ୍ଟର ଗୋଲେଞ୍ଜ ଲିମିଟେଡ୍, ଲଣ୍ଡନ୍ ।

କୋକ୍ସ, ଜେମ୍ସ୍ ଏ. (1975) : ଦି ଏନ୍ଡେଞ୍ଜରଡ୍ ୱାନ୍ସ୍, କ୍ରାଉନ୍ ପବ୍ଲିଶର୍ସ୍ ଇନ୍କ., ନ୍ୟୁୟର୍କ ।

ଗାଉଡ୍, ଆଣ୍ଡ୍ର୍ୟୁ (1981, 1986) : *ଦି ହ୍ୟୁମାନ୍ ଇମ୍ପାକ୍ଟ ଅନ୍ ଦି ନ୍ୟାଚୁରାଲ୍ ଏନ୍ଭାଇରନ୍ମେଣ୍ଟ*, ବାସିଲ୍ ବ୍ଲାକ୍ୱେଲ୍ ଲିମିଟେଡ୍, ୟୁ. କେ. ।

ଗାବ୍ରିଏଲ୍ସନ୍, ଇରା ଏନ୍. (1959) : *ୱାଇଲ୍ଡ ଲାଇଫ୍ କନ୍ଜରଭେସନ୍*, ମ୍ୟାକ୍ମିଲାନ କୋ., ଲଣ୍ଡନ ।

ଟାଇମ୍ ଲାଇଫ୍ ବୁକ୍ସ୍ (1974) : *ଭ୍ୟାନିସିଙ୍ଗ୍ ସ୍ପେସିସ୍, ନ୍ୟୁୟର୍କ ।*

ଟିକାଦେର, ବି. କେ. (1983) : *ଥ୍ରେଟେନ୍ଡ୍ ଆନିମଲ୍ସ୍ ଅଫ୍ ଇଣ୍ଡିଆ*, ଜୁଲୋଜିକାଲ୍ ସର୍ଭେ ଅଫ୍ ଇଣ୍ଡିଆ, କଲିକତା ।

ଡ଼ାନିଏଲ୍, ଜେ. ସି. (1983) : *ଦି ବୁକ୍ ଅଫ୍ ଇଣ୍ଡିଆନ୍ ରେପ୍ଟାଇଲ୍ସ୍*, ବମ୍ବେ ନ୍ୟାଚୁରାଲ ହିଷ୍ଟ୍ରୀ ସୋସାଇଟୀ, ବମ୍ବେ ।

ଡ଼ିଟ୍‌ମାରସ୍, ଆର୍. ଏଲ୍. (1989) : *ରେପ୍ଟାଇଲ୍ସ୍ ଅଫ୍ ଦି ୱାର୍ଲ୍ଡ୍*, ଫାଲ୍‌କନ୍, ନିଉଦିଲ୍ଲୀ ।

ଡ଼ଫେରୀ, ଏରିକ୍ (1970) : *କନ୍‌ଜରଭେସନ ଅଫ ନେଚର୍*, କଲିନ୍ସ୍ ପବ୍ଲିଶର୍ସ୍, ଲଣ୍ଡନ ଆଣ୍ଡ ମ୍ୟାକ୍ ଗ୍ର ହିଲ୍, ନ୍ୟୁୟର୍କ ।

ନଟରାଜ ପବ୍ଲିଶର୍ସ୍ : *ଦି ଇଣ୍ଡିଆନ୍ ୱାଇଲ୍ଡ୍ ଲାଇଫ୍ (ପ୍ରୋଟେକ୍‌ସନ୍) ଆକ୍ଟ*, 1972, (ପ୍ର. 1990), ଡ଼େରାଡୁନ୍ ।

ନେଗୀ, ଏସ୍. ଏସ୍. (1985) : *ହିମାଳୟାନ୍ ୱାଇଲ୍ଡ୍ ଲାଇଫ୍-ଆନ୍ ଇଣ୍ଟ୍ରଡକ୍‌ସନ୍*, ବିଶେନ୍ ସିଂହ, ମହେନ୍ଦ୍ରପାଲ୍ ସିଂହ, ଡ଼େରାଡୁନ୍ ।

*ନ୍ୟାସନାଲ ଜିଓଗ୍ରାଫିକ୍ (1981) ବୁକ୍ ଅଫ୍ ମାମ୍ମାଲ୍ସ୍*, ଭଲ୍ୟୁମ୍ I ଓ II, ନ୍ୟାସନାଲ ଜିଓଗ୍ରାଫିକ୍ ସୋସାଇଟୀ, ୱାସିଙ୍ଗଟନ୍ ଡ଼ି. ସି. ।

ପିକ୍ସ ଏମ୍. ଜେମ୍ସ୍ (1986) : *ଏ ଗିଭିଉ ଅଫ୍ ୱାଇଲ୍ଡ୍ ଲାଇଫ୍ ମ୍ୟାନେଜମେଣ୍ଟ*, ପ୍ରେଣ୍ଟିସ୍ ହଲ୍, ଇଙ୍ଗଲଉଡ୍ କ୍ଲିଫ୍‌ସ, ନ୍ୟୁ ଜର୍ସି ।

ପ୍ରେଟର. ଏସ୍. ଏଚ୍. (1965) : *ଦି ବୁକ୍ ଅଫ୍ ଇଣ୍ଡିଆନ୍ ଆନିମଲ୍ସ୍*, ବମ୍ବେ ନ୍ୟାଚୁରାଲ୍ ହିଷ୍ଟ୍ରୀ ସୋସାଇଟୀ, ବମ୍ବେ ।

ବ୍ରାଣ୍ଡର୍, ଏ. ଏ. ଡନ୍‌ବାର୍ (1982) : *ୱାଇଲ୍ଡ୍ ଆନିମଲ୍ସ୍ ଇନ୍ ସେଣ୍ଟ୍ରାଲ୍ ଇଣ୍ଡିଆ*, ନଟରାଜ ପବ୍ଲିଶର୍ସ୍, ଡ଼େରାଡୁନ୍ ।

ମୂର୍ତ୍ତୀ. ଟି. ଏସ୍. ଏନ୍. (1986) : *ଦି ସ୍ନେକ୍ ବୁକ୍ ଅଫ୍ ଇଣ୍ଡିଆ*, ଇଣ୍ଟରନ୍ୟାସନାଲ ବୁକ୍ ଡିଷ୍ଟ୍ରିବ୍ୟୁଟର୍ସ୍, ଡ଼େରାଡୁନ୍ ।

ସାହାରିଆ. ଭି. ବି. (1982) : *ୱାଇଲ୍ଡ୍ ଲାଇଫ୍ ଅଫ୍ ଇଣ୍ଡିଆ*, ନଟରାଜ୍ ପବ୍ଲିଶର୍ସ୍, ଡ଼େରାଡୁନ୍ ।

ସାଙ୍ଖାଲା, କୈଳାଶ (1978) : *ଟାଇଗର୍-ଦି ଷ୍ଟୋରି ଅଫ ଦି ଇଣ୍ଡିଆନ୍ ଟାଇଗର୍*, ରୂପା ଆଣ୍ଡ କୋ:, କଲିକତା ।

ସ୍କଟ୍, ସାର୍ ପିଟର (1978) : *ସକ୍‌ସେସେସ୍ ଇନ୍ ୱାଇଲ୍ଡ୍ ଲାଇଫ୍ କନ୍‌ଜରଭେସନ୍*-ବ୍ୟାକ୍ ଫ୍ରମ ଦି ବ୍ରିଙ୍କ୍, ହଚିନ୍‌ସନ୍, ଲଣ୍ଡନ୍ ।

Lasertypeset at M/s Multimedia, Puri and printed at M/s Bharat Mudranalaya, Delhi

ଶିଶୁମାନଙ୍କ ସମେତ ବିଭିନ୍ନ ବୟସର ପାଠକମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଏହି ପୁସ୍ତକଟି ଭାରତର କେତେକ ଦୁର୍ଲ୍ଲଭ ଓ ବିପନ୍ନ ପ୍ରାଣୀ ଓ ସେମାନଙ୍କ ସଂରକ୍ଷଣ ଉପରେ କେତେକ ମୌଳିକ ତଥ୍ୟ ଏକତ୍ରିତ କରିବା ନିମନ୍ତେ ଏକ ପ୍ରଚେଷ୍ଟା । ଆମ ଦେଶର ସମୃଦ୍ଧ ବନ୍ୟପ୍ରାଣୀ ପରମ୍ପରା ସମ୍ପର୍କରେ ଜନସଚେତନତା, ଏହି ପ୍ରାଣୀମାନଙ୍କର ଉଦ୍‌ବର୍ତ୍ତନକୁ ପ୍ରଭାବିତ କରୁଥିବା କାରଣ ସମୂହ, ଏବଂ ସେମାନଙ୍କ ସୁସ୍ଥିତି ଦିଗରେ ଆମର ଅବଦାନ କିପରି ରହିବା ଉଚିତ୍, ତାହାର ଜ୍ଞାନ ହେଉଛି ସଫଳ ସଂରକ୍ଷଣର ଚାବିକାଠି । ଆଶା, ଭାରତୀୟ ସ୍ତନ୍ୟପାୟୀ, ପକ୍ଷୀ, ସରୀସୃପ, ଉଭୟଚର, ଯମେରୁଦଣ୍ଡୀମାନଙ୍କ ସ୍ୱଭାବ ଓ ବାସସ୍ଥାନ ସମ୍ପର୍କରେ ରଚିତ ଏହି ପୁସ୍ତକଟି ସାଧାରଣ ଜନତା ଓ ଯୁବ ଗୋଷ୍ଠୀଙ୍କୁ ଜ୍ଞାନ ପ୍ରଦାନ କରିବା ଓ ସହାନୁଭୂତିଶୀଳ କରିବା, ବିଶେଷ କରି ଏପରି ଏକ ବିପୁଳ ମାତ୍ରାରେ ପ୍ରକୃତି ଆମକୁ ଯୋଗାଇ ଦେଇଥିବା ଚମତ୍କାର ବନ୍ୟଜୀବମାନଙ୍କର ବିବିଧତାକୁ ରକ୍ଷା କରିବାରେ ପ୍ରତ୍ୟେକଙ୍କର ଭୂମିକାକୁ ସାର୍ଥକ ପ୍ରମାଣିତ କରିବ ।

ଡଃ. ଏସ୍. ଏମ୍. ନାୟାର, ନିର୍ଦ୍ଦେଶକ, ନ୍ୟାସନାଲ ମ୍ୟୁଜିୟମ ଅଫ୍ ନ୍ୟାଚୁରାଲ୍ ହିଷ୍ଟ୍ରୀ, ନୂଆଦିଲ୍ଲୀ, ଆନ୍ତର୍ଜାତୀୟ ସ୍ତରରେ ପ୍ରଖ୍ୟାତ ଜଣେ ସଂଗ୍ରହାଳୟ ତତ୍ତ୍ୱବିତ୍ (Museologist) । ପ୍ରାଣୀବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ଓ ସଂଗ୍ରହାଳୟ-ତତ୍ତ୍ୱ (Museology)ରେ ଡକ୍ଟରେଟ୍ କରିଥିବା ଶ୍ରୀ ନାୟାର, ଏମ୍. ଏସ୍. ବିଶ୍ୱବିଦ୍ୟାଳୟ, ବରୋଦା ଏବଂ ବିରଳା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲୋଜି ଆଣ୍ଡ ସାଇନ୍‌ସ୍, ପିଲାନୀର ସଂଗ୍ରହାଳୟ-ତତ୍ତ୍ୱ ବିଭାଗରେ ଅଧ୍ୟାପନା କାର୍ଯ୍ୟ କରିଛନ୍ତି । ସେ ରକ୍‌ଫେଲର ଫେଲୋସିପ୍, ହୋମିଭାବା ଫେଲୋସିପ୍ ଓ ସ୍ମିଥ୍‌ସୋନିଆନ୍ ଇନ୍‌ଷ୍ଟିଚ୍ୟୁସନ୍ ଫେଲୋସିପ୍ ଇତ୍ୟାଦି ପାଇଛନ୍ତି । ତାଙ୍କର ବିଶେଷଜ୍ଞତ୍ୱ ଓ କୁଶଳତାର ମୁଖ୍ୟ ପ୍ରମାଣ ହେଉଛି ପ୍ରାକୃତିକ ଇତିହାସ ସଂଗ୍ରହାଳୟ (Natural History Museum) ମାନ ଗଠନ, ପାରିବେଶିକ ଶିକ୍ଷା ଏବଂ ଜନସାଧାରଣଙ୍କ ମଧ୍ୟରେ ସଂରକ୍ଷଣ ସଚେତନତାର ସୃଷ୍ଟି । ସେ ଆନ୍ତର୍ଜାତିକ ସଂଗ୍ରହାଳୟ ପରିଷଦର ଆନ୍ତର୍ଜାତିକ ପ୍ରାକୃତିକ ଇତିହାସ ସଂଗ୍ରହାଳୟ ସମିତିର ଉପସଭାପତି ଥିଲେ ଏବଂ ''ଷ୍ଟଡ଼ିଜ୍ ଇନ୍ ମ୍ୟୁଜିଓଲୋଜି''ର ସମ୍ପାଦନା କରିଥିଲେ । ଭାରତ ଓ ବିଦେଶରେ ବ୍ୟାପକ ଭ୍ରମଣ କରିଥିବା ଶ୍ରୀ ନାୟାର ଭାରତରେ ପ୍ରଥମ ପ୍ରାକୃତିକ ଇତିହାସର ଜାତୀୟ ସଂଗ୍ରହାଳୟ (National Museum Of Natural History)ର ସ୍ରଷ୍ଟା ଏବଂ ଏହାର ପ୍ରଦର୍ଶନ କାର୍ଯ୍ୟକ୍ରମ, ଶୈକ୍ଷିକ କାର୍ଯ୍ୟକ୍ରମ ଓ ସାର୍ବଜନୀନ ପ୍ରକାଶନମାନଙ୍କ ନିର୍ଦ୍ଦେଶକ ଅଟନ୍ତି ।



ଟ 31.00

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ